# ଶିଶୁ ଅନନ୍ତ ଭଜନମାଳା




ଲେଖିକା :

**ଶ୍ରୀମତୀ ପୌର୍ଣ୍ଣମାସୀ ଦାସ**

ଦାସ ବିଲଡ଼ିଂ, ଷ୍ଟେସନ ବଜାର, କଟକ - ୩



ଅନ୍ୟର ଦୁଃଖରେ କାନ୍ଦିପାର । କିନ୍ତୁ ହତାଶାରେ ନିଜର କର୍ତ୍ତବ୍ୟକୁ ପରିତ୍ୟାଗ କରନା ।

—ଶ୍ରୀମଦ୍ ବାବା ବଳିଆ

# କୃପାଭିକ୍ଷା

ଶିଶୁ ଅନନ୍ତଙ୍କର ପ୍ରଥମ ଦର୍ଶନପରେ ମୋ
ମନରେ ସବୁ ସମୟରେ ତାଙ୍କର ନାମ
ଉଚ୍ଚାରିତ ହେଲା । ତାଙ୍କର କୃପାରୁ
ଓ ତାଙ୍କର ଆଦେଶାନୁକ୍ରମେ ମୁଁ
କେତେଗୁଡ଼ିଏ ଭଜନ ଲେଖି-
ବାକୁ ସକ୍ଷମ ହୋଇପାରିଲି ।
ଏଣୁ ମୋର ଏହି ଲିଖିତ
**"ଶିଶୁ ଅନନ୍ତ ଭଜନ**
**ମାଳା"**ଟିକୁ ମୁଁ
ତାଙ୍କର କର
କମଳରେ
ଅର୍ପଣ
କରୁଛି ।

—ଲେଖିକା

# ଶ୍ରୀ ଗୁରୁ ଶରଣମ୍

କୋଟି ପୂର୍ଣ୍ଣଚନ୍ଦ୍ର ଜ୍ୟୋତିର ମଣ୍ଡଳ,
ତା ମଧ୍ୟେ ବିରାଜେ ପଦ୍ମ ଶତଦଳ ॥ ୧ ॥
ପଦ୍ମାସନେ ସ୍ଥିତ ଶ୍ରୀ ଗୁରୁ ମୂରତି,
ଉପମା ଦେବାକୁ ନାହିଁ ଯେ ଶକତି ॥ ୨ ॥
କି ବର୍ଣ୍ଣିବି ପ୍ରଭୁ ପଦ ନଖ ଜ୍ୟୋତି,
ବାର ବାର ଘେନା ହେଉ ମୋ ପ୍ରଣତି ॥ ୩ ॥
ଜଳଦ ଗମ୍ଭୀର ଶ୍ୟାମଳ ଶରୀର,
ଶ୍ରୀ ଅଙ୍ଗେ ଶୋଭିତ ଶୁକଳ ଅମ୍ବର ॥ ୪ ॥
କଣ୍ଠେ ପୁଷ୍ପମାଳା ହସ୍ତେ ଜପାମାଳ,
ଚନ୍ଦନେ ଚର୍ଚ୍ଚିତ ତିଳକ କପୋଳ ॥ ୫ ॥
ସ୍କନ୍ଧେ ଉପବୀତ ଉତ୍ତରୀ ଶୋଭିତ,
ଶ୍ରୀ ହସ୍ତେ ବିରାଜ-ମାନ ଗୀତା ଗ୍ରନ୍ଥ ॥ ୬ ॥
ଶ୍ରୀମୁଖୁ ଝରୁଛି କରୁଣାର ବାରି,
ପ୍ରକଟିତ ଭବେ କଲ୍କୀ ନାମଧରି ॥ ୭ ॥
ଯୁଗ ଅନ୍ତ ଜାଣି ଗୁରୁ ରୂପ ଧରି,
ଅନନ୍ତ ନାମରେ ଅଛ ଅବତରି ॥ ୮ ॥
କଳୁମଷ ଭରି ଏ ଅଜ୍ଞାନୀ ହୀନ
କୃପା ଦାନେ ବାରେ ଘୁଞ୍ଚାଅ ଅଜ୍ଞାନ ॥ ୯ ॥
ନ ଜାଣେ ଅଧମ ପୂଜା ବା ଅର୍ଚ୍ଚନ,
ମିନତି କେବଳ ମୋ ପ୍ରଣାମ ଘେନ ॥ ୧୦ ॥

ଓଁ ଶାନ୍ତି ଶାନ୍ତି ଶାନ୍ତି ।

# ସ୍ତୁବ

## ( ଏକ )

ଜୟ ଜୟ ବଳରାମ ଅନନ୍ତ
ଜୟ ଜୟ ହରି କମଳାକାନ୍ତ ।
ଜୟ ଜୟ ହରି ବିଶ୍ବବହାରୀ
ଜୟ ଜୟ ଶିଶୁ·ଅନନ୍ତ ହରି ।
ଜୟ ବଳରାମ ଜଗତ ଗୁରୁ
ଜୟ ବଳରାମ ତୁ କଳ୍ପତରୁ ।
ଦେବକୀ ଉଦରେ ବନ୍ଧଶାଳାରେ
ଜନମି ବଢ଼ିଲୁ ଗୋପପୁରରେ ।
ମୁକୁଟ ପସରା ତୁ ବନମାଳୀ
ଗୋପୀ ପୁଷ୍ପାଙ୍ଗନା ତୁ ତାଙ୍କ ଅଳି ।
କଦମ୍ବ ମୂଳରେ କଳା କାହ୍ନୁରେ
ଗୋପୀ ନଚେଇଲୁ ନାବ କେଳରେ ।
ଏଡ଼େ ହଟିଆରେ ତୁ ନନ୍ଦ କାହ୍ନା
ଅପବାଦେ ଉଡ଼େ ତୋ ନାମେ ବାନା ।
ରାମ ଅବତାରେ ରାବଣ ମାରି
ପାଷାଣୁ ତାରିଲୁ ଅହଲ୍ୟା ନାରୀ ।
ମୁହିଁ ହୀନ ତୋର ପାଦେ ଶରଣ
ମତେ ଉଦ୍ଧରିବୁ ହେ ନାରାୟଣ ।
ପାଞ୍ଚମନ ମୋର ପ୍ରକୃତି ଗଣ
ଶରୀରରେ ପଶି କଲେଣି କ୍ଷୀଣ ।

ହୃଦ ସିଂହାସନ ମନ୍ଦିର ତୋହ୍ର
ଚପଳ ପବନେ ସାନ୍ତ୍ୱନା କର ।
କ ଦେଇ ପୂଜିବ ତୋର ଚରଣ
ଯାହା ମୁଁ ଦେଖୁଛୁ ତୋର ଭିଆଣ ।
ମାତ୍ର ଜ୍ଞାନ ଧୂପ ଦୀପେ ପୂଜିବ
ଭକତି ଚନ୍ଦନ ତୁଳସୀ ଦେବ ।
ଏତିକ ସନ୍ତୋଷେ କର ଗ୍ରହଣ
ଚରଣରେ ପୁନଃ ମାଗେ ଶରଣ ।



( ଦୁଇ )

ଜୟ ତୁ ଶିଶୁ ଅନନ୍ତ ଜଗତର ନାଥ
ଜୟ ତୁ ଶିଶୁ ଅନନ୍ତ ମୁକତିର ପଥ ।
ଜୟ ତୁ ଶିଶୁ ଅନନ୍ତ ଅଗତିର ଗତି
ଜୟ ତୁ ଶିଶୁ ଅନନ୍ତ ଚତୁର୍ଦ୍ଧା ମୂରତି ।
ଏ ଜୀବର କର୍ତ୍ତା ତୁମ୍ଭେ ଅନନ୍ତ ଗୋସାଇଁ
ଭୁଲାଇ ଦେଉଛ ନାଥ ମାୟାଜାଲେ ମୋହି ।
ଏ ମାୟା ସଂସାରେ ପଡ଼ି ହୁଏ ଛଟପଟ
ଦୟାବନ୍ତ ହେ ଅନନ୍ତ ଦେଖା ମୁକ୍ତି ବାଟ ।
ପାପ ତାପ ହରଣ କରତା ଅଟୁ ତୁହି
ତୋ ବିନୁ ଏ ଜୀବର ଯେ ଅନ୍ୟ ଗତି ନାହିଁ ।
ଜାଣେ ନାହିଁ ଜପତପ ଜାଣେ ନାହିଁ ପୂଜା
ଜାଣେ ନାହିଁ ନିଷ୍ଠା କାଷ୍ଠା ହେ ଜାଗ୍ରତ ଦେବତା ।

ମନ୍ତ୍ରହୀନ କ୍ରିୟାହୀନ ଭକ୍ତିହୀନ ମୁହିଁ
କି ଧନ ଦେଇ ପୂଜିବି ଧନ ମୋର ନାହିଁ ।
ସନ୍ତୋଷେ ପୂଜାକୁ ମୋର କର ହେ ଗ୍ରହଣ
ଅହର୍ନିଶି ଥିବି ତୁମ୍ଭ ପାଦରେ ଶରଣ
ସହଜେ ଅବଳା ମୁହିଁ ଜ୍ଞାନ ମୋର ନାହିଁ
ଦୟାକର ଦୟାକର ଅନନ୍ତ ଗୋସାଇଁ ।
କରୁଣା ଊଣା ହେ ପ୍ରଭୁ ମୋ'ଠାରେ ନ ହେଉ
ଶିଶୁ ଅନନ୍ତ-ବଳରାମ ଘରି ଜୀବ ଯାଉ ।



## ( ଭଜନ )

କରୁଛି ଜଣାଣ ଅନନ୍ତ ନାରାୟଣ
ଶ୍ରୀପାଦ ପଦ୍ମ ତଳରେ
ଜୟ ନରହରି ନୃସିଂହ ମୁରାରି
ଅନନ୍ତ ନାମ ମହୀତରେ ।।
ଲଗାଉ କି ନାଟ ଆହେ ନଟ କୁଟ
ଜଗବନ୍ଧୁ କୃପ ସିନ୍ଧୁ
ହେ ମାୟା ପୁରୁଷ ପ୍ରଭୁ ପୀତବାସ
ମୋ ମନ ମାନସ ଇନ୍ଦୁ ।।
ଶୁଣ ଆର୍ତ୍ତବାଣ ଶୁଣ ନାରାୟଣ
କର୍ଣ୍ଣ ଡେରି ବାରେ ଶୁଣ
ଡାକୁଛି ମୁଁ ଏଣେ ତପତ ପରାଣେ
ଶୁଣି କି ହେଲ ପାଷାଣ ।।

ଗଲ ମୁହିଁ ସରି ଆହେ ଗିରିଧାରୀ
କଳି କବଳରୁ ରଖ
କେଉଁ ପାପ ଦୋଷ କଳି କଳମୁଷ
ଉଦ୍ଧାର ପଙ୍କଜ ମୁଖ ॥
ତୋର ନାମ ହରି ପାପୁ ନେଉ ତାରି
ଶୁଣିଛି ଗୁରୁଙ୍କଠାରୁ
ତୁ କ ସେହି ହରି ନୁହି ବଂଶୀଧାରୀ
ନୋହୁଁ କି ତୁ କଳ୍ପତରୁ ॥
ନୁହଁ ବଳରାମ ନୁହଁ ଆତ୍ମାରାମ
ନୁହଁ କି ତୁ ବେନୁପାଣି
ନାରଦ ମହର୍ଷି ଯେଉଁ ନାମ ଘୋଷି
ନୋହୁଁ କି ତୁ ଚକ୍ରପାଣି ॥
ଗଲ ମୁହିଁ ଭସି ପ୍ରଭୁ ବ୍ରହ୍ମବାଶୀ
ରଖ ନରେଖ ଜନରେ
ଶ୍ରୀଛନ୍ଦା ଚରଣେ ଆକୁଳ ପରାଣେ
ଡାକୁଅଛି ରଖ ବାରେ ॥
ରଖ ଗିରିଧାରୀ ରଖ ଦଇତାରି
ରଖ ଗୋବନ୍ଦ ଶ୍ରୀଧର
ରଖ ରଖ ପ୍ରଭୁ ଶିଶୁ ଅନନ୍ତ ହେ
ରଖ କରୁଣା ସାଗର ॥
ରଖ ନିରଞ୍ଜନ ଦେବକୀ ନନ୍ଦନ
ଯଶୋଦାଙ୍କ ପ୍ରାଣଧନ
ଏ ମାୟା ସଂସାରୁ ଭବ ପାରବାରୁ
ଉଦ୍ଧାର ହେ ଭଗବାନ ॥

ଅନ୍ତିମ କାଳରେ                ମୃତ୍ୟୁଶଯ୍ୟା ପରେ
କା ନାମ ଧରି ଡାକିବି
ମୃତ୍ୟୁର ବେଳକୁ                ସେ ଚକା ଡୋଳାକୁ
ବେନି ନେତ୍ରେ ମୁଁ ଦେଖିବି ॥
ଏତିକି ମାଗୁଛି                କରି ପ୍ରସାରୁଛି
ପୂର୍ତ୍ତିର ଆଁଜଳି ଡାକ
ରଖ ବା ନରଖ                ହେ ପଙ୍କଜ ମୁଖ
ରହୁ ବଳରାମ ଟେକ ॥



( ମୈତ୍ରୀ )

ଆସ ମୋ ହୃଦ ମନ୍ଦିରେ
ହୃଦ ଆନନ୍ଦ ଦାତା ।
ଆନନ୍ଦେ ଆନନ୍ଦେ ପ୍ରଣମୁ
ବିଶ୍ୱମୟ ଦେବତା ॥
ଆଣିଛି ଆନନ୍ଦ ସାଗରୁ
ଭରି ନିର୍ମଳ ଜଳ ।
ଉଲ୍ଲାସେ ଚରଣ ଧୋଇବି
ମନ କରି ନିର୍ମଳ ॥
ଶ୍ରଦ୍ଧା ଗୃଙ୍ଗୁଡ଼ିରେ ରଖିଛି
ନବ ଭାବ କୁସୁମ ।
ଘୋରି ରଖିଅଛି ପାଷାଣେ
ହୃଦ ପ୍ରେମ ଚନ୍ଦନ ॥

ଭକତି ତୁଳସୀ ପତର
ବାଛୁ ବାଛୁ ମନରେ ।
ଗୁନ୍ଥିଛୁ ମଞ୍ଜୁଳ ମାଳାଟି
ଲମ୍ବାଇବ ଗଳାରେ ॥
ଜ୍ଞାନ ଧୂପଦୀପ ପୁଲକେ
ଘେନ କୃପାସାଗର ।
ଆସ ହୃଦ ଭକ୍ତ ବିହାରି
ହୃଦ ଗଗନେ ମୋର ॥
ଚନ୍ଦ୍ର ପାଦ ତନ୍ତୁ ଝରୁଛି
ଯେଉଁ କରୁଣାଙ୍କର ।
ମୋର ଏ ତପତ ପରାଣି
ଢାଳି ସାନ୍ତ୍ୱନା କର ॥
କହୁ ନାହିଁ ମୋର ପ୍ରଭୁ ହେ ।
ତୋର ସଞ୍ଚିତ ଯାହା ।
ପାଦ ପଦ୍ମ ତଳେ ଦେଉଛି
ଘେନ ଆନନ୍ଦେ ତାହା ॥
ଶାନ୍ତି ଶାନ୍ତି ଗୁରୁ ସ୍ୱାମୀ ହେ
ଶାନ୍ତି ହେ ନାରାୟଣ ।
ଶାନ୍ତି ବୋଲି ଶୋଇ ପଡ଼ିବ
ତବ ଛନ୍ଦା ଚରଣ ॥
କେଉଁଫଳ ଦେଇ ତୋଷିବ
ସବୁ କରିଛ ଗ୍ରାସ ।
କେଉଁ ମନେ ଅବା ଶାନ୍ତିବ
ମନ ପାଞ୍ଚ ପ୍ରକାଶ ॥

କେବଣ ନାମକୁ ଜପିବ
          ନାମ ଅଶେଷ ଯାର ।
କେଉଁଠାରେ ଭେଟ ପାଇବ
          ପୂର୍ଣ୍ଣ ଅନନ୍ତ ସଂସାର ॥
ମାନସିକେ ପୂଜା କରୁଛି
          ନଜାଣଇ ଆନକୁ ।
ପୂର୍ଣ୍ଣମାସୀ ଆଶା କରୁଛି
          ତବ ପଦ୍ମ ପାଦକୁ ॥



## ( ପାଞ୍ଚ )

କାହିଁକରେ ମନ ମାତୁ ଗରବେ
ଭବ ପାରବାରୁ ତରିବୁ ଯେବେ ॥ ଘୋଷା ॥
ଜ୍ଞାନ ନେତ୍ର ଫେଇ      ଦେଖ ଆରେ ଭାଇ
ବରଜ ନଉକା ଆସିଛି ଭବେ ।
ଅତି ମନୋହର      ଅତି ହିଁ ଗମ୍ଭୀର
ଶାସ୍ତ୍ରର ପୀୟୂଷ ଝରେ ସେ ନାବେ ॥
ଅନନ୍ତ ସ୍ୱରୂପୀ      ବଳରାମ ରୂପୀ
ଗୋପନେ ନଉକା ବାହୁଛି ଏବେ ।
କଲ୍କୀ ରୂପେଣ      କଳି ସଂହାରିଣ
ପତିତ ତାରଣ ବାନା ଧରିବେ ॥
ସେ ନାବେ ବସିବୁ      ଜ୍ଞାନ ଅରଜିବୁ
ଅନନ୍ତ ବୈକୁଣ୍ଠ ଅଛି ସେ ଠାବେ ।

ଏ ମାୟା ସଂସାର   ଯେବେ ହେବୁ ପାର
  କାଟ ଭୂ ଟିକଟ ଅନନ୍ତ ନାବେ ॥
ବୃଥା ପାପମନା   ଜଞ୍ଜାଳେ ଭୁଲନା
  ବଳରାମ ଦୁଃଖ ଦୂର କରିବେ ।
ନାବ ଗୁଲୁଥିବ   ମଳୟ ବହିବ
  ଅଙ୍ଗେ ତୋର ଜ୍ଞାନମଞ୍ଜି ବୁଣିବେ ॥
ଦୋଷ ମୋ ନଧର   ପୂର୍ଣ୍ଣୀ ଆଶାଭର
  ଦେବାକୁ ଟିକଟ ଭୁଲନା କେବେ ।
ମନ ଶୁଦ୍ଧ କର   ବଳରାମେ ଧର
  ପାପ ପଙ୍କରୁ ସେ ଉଦ୍ଧାର ନେବେ ॥



( ଛଅ )

କେଉଁ ଦେବତା ମର୍ତ୍ତ୍ୟକ ଆସିଛୁ
  କେହି ଚହ୍ନନ୍ତି ନାହିଁ ।
ଛଦ୍ମ ରୂପେ ପୃଥିବୀରେ ଖେଳୁଛ
  ନେଟେ ଦେଖୁଛି ଗୁହିଁ ॥
ଚାହା ଦେବାକୁ କମାଇ ଜରନ୍ତି
  କହୁ ନାହାନ୍ତି କେହି ।
ଏକା ଭ୍ରମୁଛ ସଂସାରେ ଦେଖନ୍ତି
  କବା ବାତୁଳ ସେହି ॥
ହସି ମଧୁର ଆଳାପ କରନ୍ତି
  ଆଖି ରହଇ ଲାଗି ।

ସାଧୁମାନେ ଦର୍ଶନକୁ ଆସନ୍ତି
ଦେଖି ହୁଅନ୍ତି ସୁଖି ।
ସାଧୁ ହୋଇ ସେ ସାଧନ କରନ୍ତି
ଧ୍ୟାନ ମଗ୍ନେ ମଉନ
ଦେବ ଦୁନ୍ଦୁଭି ତା ପାଖେ ବାଜୁଛି
ଝାଞ୍ଜ ମୃଦଙ୍ଗ ସ୍ୱନ ।
ଏହି ଜନ୍ମଟି ତାହାର ଜଗତେ
ଭକ୍ତ ତାରିବା ପାଇଁ
ଭିକ୍ଷା ମାଗିବାକୁ ସିଏ ଯାଏନା
ଯାଚି ଭିକ୍ଷା ଦିଅଇ ।
ଦେବ ଋଷି ଦର୍ଶନକୁ ଆସନ୍ତି
କେହି ଜାଣନ୍ତି ନାହିଁ
କିବା ମାୟାଧର ଲକ୍ଷ୍ମୀକାନ୍ତ ସେ
ଶିଶୁ ଅନନ୍ତ ସେହି ।
ତବେ ଧର୍ମ ସଂସ୍ଥାପନା କରିଣ
ଜ୍ଞାନ କର୍ମ କହନ୍ତି
ଯାଗ ଯୋଗ ପୂଜା ଅର୍ଚ୍ଚନା ସ୍ତବ
ଅଧିନତା ହୁଅନ୍ତି ।
ପୂର୍ଣ୍ଣମାସୀ ଗୋଡ଼ାଇଛି ପଛରେ
ଧରି ଦେବ କି ନାହିଁ
ହେବେ ମାୟାଧର ନାରାୟଣ ସେ
କଏ ଜାଣେ ବା କାହିଁ ।

—*—

( ସାତ )

ଶିଶୁ ଅନନ୍ତଙ୍କ ନାମକୁ ପରି
ଡାକ ଦେଲାଣି ଧରି
ଚତୁର୍ବେଦ ପରେ ଆସି କି ବେଦ
ଛୁଇଁ ଦେଲା ଡାକରି ।
ବେଳୁ ବେଳ କଳି ବଢୁ ହେ ପ୍ରଭୁ
ଗ୍ରାସି କଲା ଅଧିରି
ତୋର ନାମ ଡାକ ଡାକ ହେ ପ୍ରଭୁ
ଭୁଣ୍ଡି ହେଲି ବଧିର ।
ଡାକ କଥା ତୋର କର୍ଣ୍ଣେ ନ ଶୁଭେ
ତୁମ୍ଭେ ପୁତନା ମରି
ଅନତ୍ୟ ସଂସାର କଳି ବାଉଁରୁ
ରଖ ହେ ବସ୍ତ୍ର ଚୋରି ।
ବେଳ ଥାଉଁ ଥାଉଁ ଉଦ୍ଧାର କର
ରାଧା ପ୍ରେମ ପସରି
ଆର୍ତ୍ତ୍ରାଣ ବଳରାମ ନାମକୁ
କରିଅଛି ମୁଁ ଆଶ୍ରା ।
କେଉଁ ନାମ ଧରି ଡାକିବି ପ୍ରଭୁ
ନାମେ ଅସଂଖ୍ୟ ଧାରି
କଳି ପ୍ରଭାବରେ ବନ୍ଧନ ଅଛି
ପ୍ରଭୁ ନାହିଁ ମୋ ଗୁରୁ ।
ଚାହିଁ ଚାହିଁ ଗୁରୁଦେବ ହେ ଶୁଣ
ଖୋଜେ ଦୁନିଆଁ ସାରା ।

—o—

# ଭଜନ

## ( ଆଠ )

ଭଜମନ ଗୁରୁ ବଳରାମଙ୍କୁ
ଦେଇ ଜ୍ଞାନ ଧ୍ୟାନ ଭକ୍ତିଭାବକୁ ॥ ଘୋଷା ॥

ଚାଲ ଚାଲ ସଖି ବାଟ ବଣା ନୋହି
ଭେଟିବା କାଳିଆ କଳା କାହ୍ନୁକୁ
ସେ ଆକୁ ମୂଳିଆ ସେ ବାଙ୍କ ଚୂଳିଆ
ମୋହନ ମୁରଲୀ ଗିରଧାରୀଙ୍କୁ
ବନ୍ଦିବା ଚରଣ ପଶିବା ଶରଣ
ପିନ୍ଧାଇବା ନେଇ ବନ ମାଳାକୁ
ହସ ହସ ବାଣୀ ସେ ବାଙ୍କ ଚାହାଣି
ଦେଖି ତାଙ୍କୁ ହଜାଇବା ଚିତ୍ତକୁ
ଯେତେ ଦେଖୁଥିବ ନୂଆ ଦିଶୁଥିବ
ହୃଦାସନେ ବସାଇବା ତାହାଙ୍କୁ
ଚାଲ ଆଗୋ ସଖି ଯିବା ମେଳ ହୋଇ
ବାନ୍ଧିବା ଭକତି ଡୋରେ ତାହାକୁ
ଜଞ୍ଜାଳ ଜାଲଟି ପଡ଼ିବ ଓଲଟି
ଜପୁଥିବ ବଳରାମ ନାମକୁ
ଏ ଯେ ମହାକାଳ ବପଦ ଶିକୁଳି
ଧରି ବସିଛି ଶାସନ ଦଣ୍ଡକୁ
ବାଧା ବନ୍ଧ ଦେଇ ଚାଲିବା ଆଗେଇ
ଗୁରୁନାମ ଦେବ ମୋକ୍ଷ ପଦକୁ

***

( ନଅ )

ଆରେ ବାଇମନ ଯାଉ ତୁ କେଣିକି
ଖୋଜୁଅଛୁ ତୁହି କାହାକୁ
ଯାଉ ଯାଉ ଯେବେ ଭୁଲି ବାଟେ ଯିବୁ
ଭେଟ ନ ପାଇବୁ କାହାକୁ ।
ଯେବେ ଯିବୁ ମନ ତୋ ଲକ୍ଷ ସ୍ଥଳକୁ
ଶୁଣ ଥରେ ମୋର ବୋଲକୁ
ତୋ ନାକ ସିଧାରେ ବାଟ ପଡ଼ିଛି
ଅଣ୍ଡଲେର ବଲ ହୁଙ୍କାକୁ ।
ସେ ହୁଙ୍କା ମୂଳରେ କଏ ବସିଅଛି
ଦେଖି ହେଜା ତୋର ଚଉକୁ
ଚଢା ଚଇତନେ ଯେ ଚୋକା ବସିଛି
ସହଜ ନମଣ ତାହାକୁ ।
ମୁରୁକ ମୁରୁକ ହସେଇ ହସେଇ
କାଣିନେବ ତୋର ଚଉକୁ
ସେଥିରେ ଯେବେ ତୁ ଭୁଲିଯିବୁ ମନ
ଆଉ ନ ପାଇବୁ ଭେଟକୁ ।
ସେ କାଳିଆ ଚୋକା ବଡ଼ ଦଗାବଆ
ଜଗିଥିବୁ ତା'ର ବାଟକୁ
ଆଣ୍ଠି କରି ଯେବେ ନ ଛାଡ଼ିବୁ ମନ
ଜାଣିବୁ ଗନ୍ଧର କଥାକୁ ।
ଖେଳାଉଛି ନାଗ ନ ପାଇବା ବାଗ
ନ ଡରିବୁ କେବେ ତାହାକୁ

ହୁଙ୍କା ମୂଳେ ବସି ଫୁଙ୍କା ବେତ ଧରି
ଗାଉଛୁ ଗୁଣିଆ ଗୀତକୁ
ଯୋଡ଼ ପାଦ ପାଣି ତାର ଗୁଣ ଗୁଣି
ଜପୁଥିବୁ ତାର ନାମକୁ ।
ପାଇବୁରେ ବାବୁ ସଦ୍‌ଗତି ତୁହି
ଲଭିବୁ ବୈକୁଣ୍ଠ ଧାମକୁ
ମୁହିଁ ମୂଢ଼ମତି ଜାଣେ ନାହିଁ କିଛି
ଶ୍ରୀପଦ ସେବା କରିବାକୁ ।
ପୂର୍ଣ୍ଣମାସୀ ଆଶା କରିଛି ଭରସା
ଚରଣେ ଶରଣ ନେବାକୁ ।



( ଦଶ )

ଗୁ ରୁ ବଳିଆ ଅନନ୍ତ
ତାଙ୍କ ପଦେ ଚିତ୍ତ ରହୁ ନିରତ—ଗୁ ରୁଦେବ ହେ
ସାହା ମୋର ଲକ୍ଷ୍ମୀକାନ୍ତ (୧)
କର୍ମା କି ଏ ନିଶା ଲଗିଲା
ଗୁ ରୁନାମ ମୋର ଭୁଣ୍ଡେ ନହେଲା—ଗୁ ରୁଦେବ ହେ
ମୋ ହୃଦ ବନ ଦହିଲା (୨)
ଦେହରୁ ଜ୍ଞାନ ଶକତି
ଲୋପପାଇଯାଏ ହେ ମହାପତି—ଗୁରୁଦେବ ହେ
କରୁଣା କର ଶ୍ରୀପତି (୩)

ଚରଣ ତଳେ ଶରଣ
ରଖିବାକୁ ତୁମ୍ଭ ନୁହଁ କୃପଣ—ଗୁରୁଦେବ ହେ
ତୁମ୍ଭେ ପତିତ ତାରଣ (୪)
ଲକ୍ଷେ ଯୋଜନରେ ଗଜ
ଡାକ ଦେଲା ପ୍ରଭୁ ହେ ଦେବରାଜ—ଗୁରୁଦେବ ହେ
ଉଦ୍ଧରିଲ ଗଜରାଜ (୫)
ମୃଗୁଣୀ ବିପତ୍ତି ବନେ
ଆତଙ୍କ ନାଶନ ଶୁଣିଲ କର୍ଣ୍ଣେ—ଗୁରୁଦେବ ହେ
ଉଦ୍ଧାରିଲ ଯାଇ ବନେ (୬)
ମାୟାଧର ତୁ ବୋଲାଉ
ପତିତ ଜନରେ ମାୟା ଲଗାଉ—ଗୁରୁଦେବ ହେ
ବାନାକୁ ନିନ୍ଦା କରାଉ (୭)
ଗୁରୁ ହେ କି ଦୋଷ କଲି
ଶ୍ରୀ ଚରଣେ ଅପରାଧି ହୋଇଲି—ଗୁରୁଦେବ ହେ
ପାପ ପଙ୍କେ ବୁଡ଼ି ମଲି (୮)
ଦେଇଛ ଗୃହ ଜଞ୍ଜାଳ
ଛାଡ଼ିବାକୁ ପ୍ରଭୁ ନପାଏ ବେଳ—ଗୁରୁଦେବ ହେ
(ପଦେ) ଅର୍ପିଲି ହୃଦ କମଳ (୯)
କରେଣ ସୁଦରଶନ
ଧରିଅଛ ପ୍ରଭୁ ଶ୍ରୀଭଗବାନ—ଗୁରୁଦେବ ହେ
ଶିର ମୋ କର ଛେଦନ (୧୦)
ଢାଲ ହୁଙ୍କାର ଶିଖରେ
ଧବଳବର୍ଣ୍ଣ ଜ୍ୟୋତିର ଉପରେ—ଗୁରୁଦେବ ହେ
ବାନା ଉଡ଼େ ଫରଫରେ (୧୧)

ତୀର୍ଥ ଭ୍ରମଣରେ ଗଲି
ସବୁତୀର୍ଥ ତୁମ୍ଭଙ୍କ ପାଦମୂଳେ ପାଇଲି—ଗୁରୁଦେବ ହେ
ମୋକ୍ଷ ଆଶା ମନାସିଲି (୧୨)
ଆତ୍ମା କି ବଚନ ଆସ
କଲା ଶ୍ରୀମୁଖରେ ଚନ୍ଦନ ଶୋଭା—ଗୁରୁଦେବ ହେ
ଯୋଗୀ ମୁନି ମନ ଲୋଭା (୧୩)
କଲା କାହ୍ନୁ ବଂଶୀଧର
କାଳୀନାଗ ସଙ୍ଗେ ଖେଳ ତୋହର—ଗୁରୁଦେବ ହେ
ଗୋପାଙ୍ଗନା ମନ ଚୋର (୧୪)
ବାଲୁଙ୍କେଶ୍ୱର ମନ୍ଦିର
ତା' ମଧ୍ୟେ ତୋହର ନିତ୍ୟ ବିହାର—ଗୁରୁଦେବ ହେ
(ଯାହା) ବ୍ରହ୍ମା ଶିବେ ଅଗୋଚର (୧୫)
ଅନନ୍ତ ରୂପେ ଶ୍ରୀହରି
କଲି ପାପଶକ୍ତି ସଂହାର କରି—ଗୁରୁଦେବ ହେ
ଚଳବୁ କି ନିଜ ପୁରି (୧୬)
ମୁଁ ହୀନ ପାପ ମତି
ବର୍ଣ୍ଣି କି ପାରିବ ତୋହର କୀରତି—ଗୁରୁଦେବ ହେ
ଦୟାରଖ ବିଶ୍ୱପତି (୧୭)
ମାଗୁଛି ଅଜ୍ଞାନୀ ନର
ଦୋଷ ନ ଧରିବ ହେ ଚକ୍ରଧର—ଗୁରୁଦେବ ହେ
(କ୍ଷମା) କରିବ ଦୟା ସାଗର (୧୮)
ଶଙ୍ଖ ଚକ୍ର ଗଦାଧର
ପାଦପଦ୍ମ ରେଣୁ ଦିଅ ମୋର ଶିର—ଗୁରୁଦେବ ହେ
ଏ ଆଶା ମାତ୍ର ପୂର୍ଣ୍ଣିର (୧୯)

ସତେ ଗୁରୁ ଦୟା ହେବ
ଅଭାଗିନୀ ଆଶା ପୂରଣ ହେବ—ଗୁରୁଦେବ ହେ
ମାୟା ଫସାରୁ ତରିବ (୨୦)



(ଏଗାର)

ଶ୍ରୀଗୁରୁ ଶ୍ରୀଗୁରୁଦେବ
ଗୁଣ୍ଡିଚ୍ଚ ବିଜୟ ହେବ
ସେ.ଯାତକୁ ଗୁରୁଦେବ
ଦେଖିବା ପାଇଁ କହିବ ।
ବେଳ ଥାଉଁ ଗୁରୁଦେବ
ସମୟ କହି ରଖିବ
ରୂପ ତୋର ଦେଖି ଦେବ
ମନରୁ ଭ୍ରାନ୍ତ ତୁଟିବ ।
ଦାସ ଯେବେ ନାଶ ଯିବ
ଗୁରୁଙ୍କ ଅଙ୍କାଣ୍ଡି ହେବ
ନାମରେ ହେଳା ନ ହେବ
କରୁଣା ମୋ ଠାରେ ଥିବ ।
ବଳରାମ ଯନ୍ତ ଭାବ
ଭୁଲି କ ପାରେ ଏ ଜୀବ
ବାହୁଡ଼ା ବିଜୟ ଦେବ
ଗୁଜୁରି ସ୍ୱଦାସ ହେବ ।

ସେ ବେଳକୁ ଏ ଜୀବ
ଅପେକ୍ଷା କରିଣ ଥିବ
ସତେ ଗୁରୁ ଦୟା ଦେବ
ସେ ଯାତ ପୁନ ଦେଖିବ ।

—*—

## ( ବାର )

ଜାଇଫୁଲ ଲୋ
ଦେଖିଯିବୁ କି ଯାତ ॥ ଘୋଷା ॥
ଦେଖିଲେ ସେ ଯାତ ପରାଣ ସରସ
ତୋ ଆଖି ରହିବ ଲାଖି ଲୋ
ସେ ଯେଉଁ ଦେବତା ବସିଛି ସେଠାରେ
ତା ପାଶେ ଗାୟକ ଠିଆ ଲୋ ।
ସେହି ସେ ଗାୟକ ଆନନ୍ଦ ଦାୟକ
ଦେବତା ମନକୁ ନିଏ ଲୋ
ଯେଉଁ ଅଗ୍ନିକୁଣ୍ଡ ତା'ପାଶେ ଜଳୁଛି
କାମନା ପୂରଣ ହୁଏ ଲୋ ।
ଗୋଟି ଗୋଟି ଯେତେ ଦେବତା ଦେଖିବୁ
ମୁଣ୍ଡ ତୋର ବଥା ହେବ ଲୋ
କେତେ ସାଧୁ ସନ୍ଥ ଶିରେ କରଯୋଡ଼
ପରୀକ୍ଷା ସେ ଦେଉଥିବେ ଲୋ ।

ନୂଆ ଦେବତାଙ୍କୁ ଦର୍ଶନ କରିବୁ
ଦୁଃଖ ଚୋର ଦୂର ହେବ ଲୋ
ସାତ ଜନମର ପାତକ ନାଶିବୁ
ଜନମ ସାର୍ଥକ ହେବ ଲୋ ।

—*—

## ( ତେର )

ଲକ୍ଷ୍ମୀ ନାରାୟଣ ଅଛନ୍ତି
ଯାଇଁ କର ଦର୍ଶନ
ଦର୍ଶନେ ମୁକତି ଲଭିବୁ
ନାମ କର କୀର୍ତ୍ତନ ।
ଶଙ୍ଖ ନାଭି ପଦ୍ମ ସେଠାରେ
ଲମ୍ବି ଆଛି ସହିତ
ବିବେକ ପରାଣେ ଦେଖିବୁ
ବଇକୁଣ୍ଠ ସେହି ତ ।
ନରବେ ଚେଇଁଣ ଶୋଇଛି
ଲକ୍ଷ୍ମୀ ପାଦ ମଞ୍ଚାଳେ
ଅନନ୍ତ ଶୟନ କରିଛି
ଦେଖି ମନ ନିଷ୍ଠଳେ ।
ସରସ୍ୱତୀ ପାଶେ ବସିଣ
ଗୁ ରୁ ଗମ୍ଭୀର ସ୍ୱରେ
ବୀଣା ସ୍ୱନେ ଛନ୍ଦେ ଗାଉଛି
ପ୍ରଭୁ ମନକୁ ହରେ ।

ଏମନ୍ତ ମୂରତି ଦର୍ଶନେ
ଶାନ୍ତି ଲଭି ହୃଦର
ପ୍ରକୃତି ବଶ ନ ହୋଇଣ
ଜ୍ଞାନ ସିଦ୍ଧି ତୁ କର ।
ପୂର୍ଣ୍ଣିମାସୀ ସେହ୍ନ ଦର୍ଶନ
ପାଇଁ ମନ ଅସ୍ଥିର
ଜଗତ କରତା ହରିବେ
ହୃଦ ଯନ୍ତ୍ରଣା ତାର ।



( ଚଉଦ )

ଜୟ ଜୟ ତୁ ଅନନ୍ତ ମୂରତି
ଜୟ ଜୟ ତୁ ବଳରାମ ଯତି ।
ଜୟ ଜୟ ହେ ଗୋଲକ ବିହାରୀ
ଜୟ ଜୟ ହେ ବିଶ୍ୱରୂପ ଧାରୀ ।
ଜୟ ଜୟ ହେ ଭକତ ବତ୍ସଳ
ଜୟ ଜୟ ହେ ପ୍ରଭୁ ଆଦିମୂଳ ।
ଜଗତ କରତା ତୁ ଚକ୍ରଧର
ସର୍ବ ଜୀବ ପରେ ତୁ ଅଧୀଶ୍ୱର ।
ମନ ତୁ ଯାଆରେ ଅରିଲେ ମଠ
ସେଠାରେ ବସିଛି ମୁକତି ହାଟ ।
ଯୋଗୀ ଋଷି ମୁନି ଆସନ୍ତି କେତେ
ଶ୍ରୀମୁଖ ଦର୍ଶନ ମନାସି ଚିତ୍ତେ ।

ନାରଦ ମହର୍ଷି ବୀଣା ବାଦନ
ନାମ ଘୋଷୁଛନ୍ତି ସେ ସର୍ବ ଦିନ ।
ନିର୍ମଳ ଭକତ ନିର୍ମଳ ଭାବ
ସେ ପାଉ ନାହାନ୍ତି ତାଙ୍କର ଠାବ ।
ଚତୁଃର୍ମୁଖେ ବ୍ରହ୍ମା ପଢ଼ନ୍ତି ବେଦ
ତଥାପି ସେଥିରେ ନ ପାନ୍ତି ଭେଦ ।
ଶିବ ଯେ ଅଟନ୍ତି କୈଳାସ ବାସୀ
ନାମ ଘୋଷୁଥାନ୍ତି ଶ୍ମଶାନେ ବସି ।
ସେ ପାଉ ନାହାନ୍ତି ନାମରେ ବାଟ
ଘୋଷି ଘୋଷି ମୁଣ୍ଡେ ବାନ୍ଧିଲେ ଜଟ ।
ଅଶେଷ ପ୍ରକାରେ ନାମ ତାହାର
ଅଣାକାର ପ୍ରଭୁ ନାହିଁ ଆକାର ।
ଗୁରୁନାମ ଜାଣ ସଂସାରେ ସାର
ଗୁରୁ ନାମ ଅଟେ ମୋକ୍ଷ ଦୁଆର ।
ଗୁରୁ ଯେ ଅଟନ୍ତି ତ୍ରିମୂର୍ତ୍ତି ଜାଣ
ବ୍ରହ୍ମା ବିଷ୍ଣୁ ଶିବ ନୁହନ୍ତି ଭିନ୍ନ ।
ଏ ମାୟା ଜାଲଟି ବଡ଼ ଜଟିଳ
ଗୁରୁ କରି ମନ କର ନିର୍ମଳ ।
ଅନନ୍ତ ସ୍ୱରୂପି ବଳରାମଙ୍କୁ
ଡାକ ଥରେ ହେଜା ତୋର ମନକୁ ।
କେଉଁ ମନ ଦେଇ ଡାକିବି ତାଙ୍କୁ
ପରବସତା ଆସୁନାହିଁ ମନକୁ ।
କେଉଁ ଭାବେ ତାଙ୍କୁ ପୂଜିବି ନେଇ
ଭକ୍ତିଭାବ ମନେ ଆସୁତ ନାହିଁ ।

ଦୟାମୟ ପ୍ରଭୁ ଶ୍ରୀ ଭଗବାନ
ଶ୍ରୀ ପାଦପଦ୍ମରେ ରହୁ ମୋ ମନ ।
ଶ୍ରୀଗୁରୁ ଶ୍ରୀଗୁରୁ ଅନନ୍ତ ଦେବ
ତବ ଶ୍ରୀଚରଣେ ଲୋଟୁ ଏ ଜୀବ ।
ଆହେ ଗୁରୁଦେବ ସୁଦୟା କର
ଭାବିବାକୁ ଧୈର୍ଯ୍ୟ ନାହିଁ ମୋହର ।
ତୋହର ଦୟାକୁ ଚ୍ୟୁହିଁ ରହିଛି
ମାୟାରେ ଅଜ୍ଞାନେ ମୁଁ ଭ୍ରମୁଅଛି ।
ଗୁରୁନାମ ଯେଉଁ ଜୀବରେ ନାହିଁ
ଅକାରଣ ସେହି ଜୀବ ହୁଅଇ ।
ଶ୍ରୀଗୁରୁ କୃପାରୁ ବନ୍ଧ ବିନାଶ
ମାନସ ଦୁଶ୍ଚିନ୍ତା ଫିଙ୍ଗା ପବିଷ ।
ଗୁରୁନାମ ନଭଜନ୍ତି ଯେ ନର
ପାପ ପଙ୍କେ ସେହୁ କରନ୍ତି ଘର ।
ଗୁରୁ ନାମ ଯେହୁ କରନ୍ତି ନିନ୍ଦା
ଯମ ଯନ୍ତ୍ରଣାରେ ହୋଇବ ବନ୍ଧା ।
ଗୁରୁଠାରୁ ବଡ଼ ଠାକୁର ନାହିଁ
ତାଙ୍କୁ ଛାଡ଼ି ମନ ଭୁଲୁ କମ୍ପାଇଁ ।
ମାୟାରେ ପଡ଼ି ତୁ ଭୁଲନା ମନ
ଜାଲେ ପଡ଼ି ମୀନ ହୁଏ ଯେସନ ।
ନହୁଅ ଚେତନରେ ମୂଢ଼ ମନ
ଯାପୁ ଯେବେ ତରିବାକୁ ତୋ ମନ ।
ଧନ୍ୟ ଗୁରୁଦେବ ଧନ୍ୟ ତୋ ପିତା
ଧନ୍ୟ ଗର୍ଭଧାରୀ ତୋହର ମାତା

ଯାଇଙ୍କା କୁଳରେ ହେଲୁ ଜନମ
ପବିତ୍ର କରିଲୁ ଅଶଲେ ଗ୍ରାମ ।
ସେ ପବିତ୍ର ରେଣୁ ପଡ଼େ ଯା ଶିରେ
ମନୁଷ୍ୟ ଜନମ ସାର୍ଥକ କରେ ।
ଗୀତା ଭାଗବତ ପଠନେ ମନ
ପଶୁ ନାହିଁ କମ୍ପା ହେ ଭଗବାନ !
ଭୁଜଙ୍ଗୀନି ଚରି ଶଷ୍ପରେ ପାପ
ଧ୍ୱଂସ ନ କରୁଛି ବଢ଼ାଇ ତାପ ।
ପୂର୍ଣ୍ଣିମାସୀ ଗୁଡ଼ ଗୃହ ଜଞ୍ଜାଳ
ଭଜୁ ଗୁରୁନାମ କରୁ ସମ୍ବଳ ।



# ଶିଶୁ ଅନନ୍ତଙ୍କ ଭଜନାମୃତ

(ବନ୍ଦନା)

ବନ୍ଦଇ ହେ ମହାପୁରୁଷ
ତବ ପଦ କମଳେ,
ଶାନ୍ତ ଶକ୍ତ ଧାରୀ ହୋଇଣ
ଖେଳ ମହୀ ମଣ୍ଡଳେ ।୧।
ମହାବାହୁ ତଳେ ସ୍ପଷ୍ଟ
ଶାନ୍ତ ସୁଧୀର ବାଣୀ,
ସମୁଦ୍ରୁ ଅଧିକ ଗମ୍ଭୀର
ସ୍ୱରେ ତତ୍ତ୍ୱ ବଖାଣି ।୨।
ବିଶ୍ୱେ ବିଶ୍ୱପିତା ଆସିଛ
ଧରି ଅନନ୍ତ ରୂପ,
ପାପୀ ତାପୀ ଦେଖି ସେ ରୂପ
ଭୁଲି ଯାଉଛନ୍ତି ପାପ ।୩।
ସଚରାଚର ବ୍ରହ୍ମାଣ୍ଡରେ
ଭ୍ରମଣ ଯେ କରୁଛ,
ଶ୍ରୀ ଚରଣ ସେବା କାହାକୁ
ପାଶେ ପାଶେ ରଖିଛ ।୪।

ଚନ୍ଦନ ଚର୍ଚ୍ଚିତ ଶ୍ରୀଅଙ୍ଗ
ଫୁଲ ମାଳେ ଶୋଭଇ,
ଆଳତି ସମୟେ ଗୃହିଁଲେ
କୋଟି ପାପ ହରଇ ।୫।
ପ୍ରେମ ଶିଖା ଭକ୍ତ ହୃଦୟେ
ଦେଉଅଛ ଜଳାଇ,
ଶୋଭା ଦଶେ କଳା ଶ୍ରୀମୁଖ
କୋଟି ଚନ୍ଦ୍ର ନିନ୍ଦଇଁ ।୬।
ପୂଜା ଅରଚନା କରଣେ
ମୁହିଁ ଅଟେ ଅକ୍ଷମ,
ଚରଣ ସେବାରେ ରଖିବ
ଜପୁଥିବ ମୁଁ ନାମ ।୭।
ଶ୍ରୀମୁଖ ଦର୍ଶନେ ଏ ମନ
ତୃପ୍ତି ହେଉଣ ଥିବ,
ପୌର୍ଣ୍ଣି ମାସୀ କହେ ହେ ପ୍ରଭୁ
ଏହି ଦୟା ହୋଇବ ।୮।

—୦—

ପ୍ରାର୍ଥନା

ଜୟ ଲକ୍ଷ୍ମୀକାନ୍ତ ଅନାଥର ନାଥ
ଜୟ ଅନନ୍ତ ଠାକୁର
ଜୟ ନିରଞ୍ଜନ ଜାମଳା ଭଞ୍ଜନ
ଆଉଁଷାଣ ପିତାମ୍ବର (୧)

ପ୍ରହ୍ଲାଦ ବଚନେ ଡାକଥିଲୁ ବନେ
ତା ଡାକକୁ ଥିଲୁ କାନ,
ସପ୍ତ ବରଷର ଶ୍ରେଷ୍ଠ ଭକ୍ତ ୟାର
ଧ୍ରୁବେ ଦେଲେ ଦରଶନ (୨)
ନ ହୋଇ ନିଷ୍ଠୁର ପ୍ରଭୁ ଚକ୍ରଧର
ଶୁଣିବାରେ ମୋ ଗୁହାରି,
ସଂସାର ଦହନ କାନନରେ ମନ
ପୋଡ଼ୁଛି ନିଅ ଉଦ୍ଧାରି (୩)
ପୂଜାର ସମ୍ଭାର ନାହିଁ ମୋ ପାଖର
ପୂଜିବାର ଶକ୍ତି ନାହିଁ,
କେବଳ ତୁଣ୍ଡରେ ଡାକେ ମୁହିଁ ପାରେ
ସେ ଶକ୍ତି ଦିଅ ଗୋସାଇଁ (୪)
ମୁହିଁ ଅକିଞ୍ଚନ ଉଚ୍ଚ ହୀନସ୍ଥାନ
କିପରି ଚରଣ ସେବା,
ବାଟ ପାଉନାହିଁ ଅବାଟରେ ଥାଇ
[ପଥ] ଦେଖାଅ ଅନନ୍ତବାବା (୫)
ଅବାଟରେ ପଡ଼ି ଯିବି ମୁହିଁ ସଡ଼ି
ନ ଉଦ୍ଧାରିଲେ ଆପଣ,
ଜନ ସମାଜରେ ନିନ୍ଦା ହୋଇପାରେ
କର ଦୁଃଖରୁ ତାରଣ (୬)
କେଉଁ ଦୋଷ ଅଛି କ୍ଷମା ନ ପାଉଛି
ବରୁର କି ତାର ନାହିଁ,
ଆର୍ତ୍ତିଙ୍କ ଆରତ ଶୁଣ ହେ ଅନନ୍ତ
ଆରତ ଭଞ୍ଜନ ତୁହି (୭)

ବଇକୁଣ୍ଠ ନାଥ ନ ଶୁଣ ଆଉଛ
ଦ୍ରୁଷ୍ଟଦ୍ରୋଇ ଏ କି କଥା,
ପୌର୍ଣ୍ଣମାସୀ କହୁ ଜଣାଇବ ଯାଇ
ବଳରାମେ ଏ ବାରତା (୮)



(ଜଣାଣ)

ହେ ଅନନ୍ତ ରଖ
ତୁମ୍ଭେ ଥାଇଁ ହେଉଛୁ ନିରେଖ (ଘୋଷା)
ପାଦ ପଦ୍ମର ତଳେ ଭକ୍ତଜନ ଗହଳେ
ଦୁଃଖୀ ଜଣାଉଛୁ ବସି ଦୁଃଖ
ମୋ ପରି ଦୁଃଖୀଜନ ନଥିବେ ତ୍ରିଭୁବନ
ଜନ୍ମଦେଇ କରୁଛ ଅରକ୍ଷ
ତୁମ୍ଭେ ତ କୃପାସିନ୍ଧୁ ଦୁଃଖୀ ଜନଙ୍କ ବନ୍ଧୁ
କାହିଁପାଇଁ ହେଉଛ ବିମୁଖ
ଦୁଃଖ ଯନ୍ତ୍ରଣା ଦାଉ ସହି ନପାରେ ଆଉ
ନିସ୍ତାର ହେବାକୁ ବାଟ ଦେଖ
ନ କରିଲେ କାରଣ ଧରି ତୁମ୍ଭ ଚରଣ
ନିନ୍ଦା ଘୋଷିବ ସକଳ ମୁଖ
ବସି କରୁଛ ନିରେଖ ପୌର୍ଣ୍ଣମାସୀର ଦୁଃଖ
ତା'ପାଇଁ କଠିନ ତୁମ ବକ୍ଷ

—*—

(ଭୁଲମନ ଭୁଲୁ କାହିଁକି)—ବୃଚ୍ଛେ

ଶୁଣ ଶୁଣ ଆଲୋ ମିତଣୀ
କଳିଯୁଗେ ଅପସତ କଥା ହେଲଣି (ଘୋଷା)

ଗୋପ ବାଳ ସଙ୍ଗେ ଆସି   ପାଇକା କୂଳରେ ବସି
ନନ୍ଦ କଳାକାହ୍ନୁ ଏବେ ଦେଖା ଦେଲଣି ।୧।

ହାତେ ଧରି କେନ୍ଦୁ ବାଡ଼ି   ମସ୍ତକେ ପଗଡ଼ି ଭିଡ଼ି
କେତେ ନବରଙ୍ଗ ସେଠି କରିଗଲଣି ।୨।

କରିଛି ଚନ୍ଦନ ବୁଡ଼ି   ଜନ ସମାଗମ ଭିଡ଼ି
ଗୁପତେ ଗୁପତେ ନାବକେଳି କଲଣି ।୩।

ନନ୍ଦ ଉପନନ୍ଦ ଖେଳ   ସୁବଳ ସୁଦାମ ମେଳ
ଗୋପାଳୁଣୀ ମିଳି ଦଧି ଦୁର୍ଧ ଦେଲେଣି ।୪।

ଉଭରଲେ ମିତଣୀ କାନ   ହେଲଣି ମୁରଲୀ ସ୍ୱନ
ରାଧା କାନେ ବାଜି ପାଗଳମା ହେଲଣି ।୫।

କରତାଳ ଝାଞ୍ଜସ୍ୱନ   ମୁରୁଦଙ୍ଗ କମ୍ପମାନ
କାମିନିଏ ମିଳି ହୁଳ ହୁଳି ଦେଲେଣି ।୬।

ତ୍ରିଭଙ୍ଗୀ ଠାଣିରେ ନାଚ   ନାହିଁ ତାଙ୍କ ଉଚ୍ଚନୀଚ
ପାପୀ ଉଦ୍ଧାରଣ ବାନା ଧରିନେଲେଣି ।୭।

ସେ ଶ୍ରୀପାଦ ପଦ୍ମେ ପଡ଼ି   ଜଣାଉଛି କରଯୋଡ଼ି
ପୌର୍ଣ୍ଣମାସୀକି ଦେଖାଅ କୃପା ତରଣୀ ।୮।

( ଝୋଲା ମଦେଶ ଦେ )

କରୁଣା କର କଷ୍ଟରେ

ରମା ରମଣ ହେ          ବିନତି ଘେନ ମୋହର
ଜୟ ନର ହରି          ନୃସିଂହ ମୂରତି
ନାମଟି ଅଟେ ତୋହର (ଘୋଷା)
ଅନନ୍ତ ଶୟନେ          ଯାହାଙ୍କ ବିଶ୍ରାମ
ଲକ୍ଷ୍ମୀ ଯାହାଙ୍କର ରାଣୀ
କରିଲେ କରୁଣା          ନ ହୋଇବ ଊଣା
ବାଉନ କୋଟି ଭଣ୍ଡାର ।୧।
କମଳା ଯାହାଙ୍କ          ହୃଦୟ ବଲ୍ଲଭୀ
ଚରଣ କଙ୍କର ସଦା
ବିନତା ନନ୍ଦନ          ପକ୍ଷ ବିସ୍ତାରଣ
ଆଜ୍ଞାବାହୀ ଅନୁଚର ।୨।
ଅନନ୍ତ ଶୟନେ          ଚିନ୍ତା କରୁଥାଅ
ନିରନ୍ତରେ ଭକ୍ତ ପାଇଁ
ଚକ୍ରଧାରୀ କରେ          ଚକ୍ର ଯେ ବୁଲୁଛି
ଆରତ ନାଶନ କର ।୩।
ଗଭୀର ଜଳରେ          ଡାକଥିଲା ଗଜ
ତାର ନାଶିଲ ବିପତ୍ତି
ଧୀବର ଚରଣ          ଧୋଇ ହେଲା ଧନ୍ୟ
କୁବ୍‌ଜା କଲ ସୁନ୍ଦର ।୪।
ଶ୍ରୀବତ୍ସ ବ୍ରାହ୍ମଣ          ପଦାଘାତ କଲା
କ୍ଷମା ସାଗର କ୍ଷମିଲ

କହେ ପୌର୍ଣ୍ଣମାସୀ ଦାସ ସଦଗତ
ପ୍ରଭୁ ବାରେ କୃପା କର ।୫।

***

[ ଏତେ ଦିନେ କହେ ବନ୍ଧୁ ]
ବଳରାମ କଳା କାହ୍ନୁ ନାମକୁ ଧରି
ଆଦଳ ସଂସାର ପଙ୍କୁ ହେବାରେ ପାରି (ଘୋଷା)
ବାଙ୍କ ଚୂଳଆଙ୍କ ବାଙ୍କ ଚାହାଣି ଠାଣିକୁ ଦେଖ
ଭଳ ଭଳ ଆସନ୍ତି ସେ ମୁରଲୀ ଧାରୀ
ଗଳାରେ ଲମ୍ବିଛି ଫୁଲ ନାହିଁ ସେ ଫୁଲର ମୂଲ
ବେକୁ ବେଳ ଜ୍ୟୋତି ତାଙ୍କ ଜଠର ଭରି
ହୃଦେ କଉସ୍ତୁଭ ମଣି ମସ୍ତକେ ଖେଳଇ ଫଣୀ
ଡୋଳାରେ ଖେଳୁଛି ହଂସ ହଂସୁଲି ଧରି
ବୃହି ସେ ରୂପ ମାଧୁରୀ ଭକତେ ହୁଅନ୍ତି ପାରି
ମର୍ତ୍ତ୍ୟେ ଓହ୍ଲାଇ ଅଛନ୍ତି ବୈକୁଣ୍ଠ ହରି
ଭକ୍ତଙ୍କ ମନ ବାସନା ପୂରଣ କରିବେ ସିନା
ପାଦ ପଦ୍ମେ ଜଣାଉଛି ଭକ୍ତ ବିହାରୀ
ଭଣ୍ଡାରୁ ନୋହିବ ଊଣା ଗୁରୁ କଲେ କରୁଣା
ଚରଣେ ଶରଣ ଗଲ କୋଦଣ୍ଡ ଧାରୀ
କାଳିଆ ବଳିଆ ପତି ରହୁ ତାଙ୍କ ପାଦେ ମତି
ଗୁରୁଙ୍କ ଛାମୁରେ ପୌର୍ଣ୍ଣମାସୀ ଗୁହାରି ।



(ଆରେ ମନ ଭ୍ରମି ନ ମର
ଶ୍ରୀଗୁରୁ ଚରଣେ ଲଗାଅ ଶିର)
କଳା କାହ୍ନୁ ନନ୍ଦ ଦୁଲାଳ
ଜଗି ବସିଅଛି ସେ ବୃକ୍ଷମୂଳ

ଜମ୍ବୁ ଆଛୁ ବୃକ୍ଷ ପାଶରେ
କଳ୍ପବଟ ଅଛି ସେଠାରେ
ସ୍ଥିର ଚିତ୍ତେ ମନ ନିଅ ତା ସନ୍ଧାନ
କୃପାବାରି ସଦା ଝରେ ତା ମୂଳ ।୧।

ପୋଖରୀଟି ଗମ୍ଭୀର ଭରି
କୃପା ନୀରେ ରହିଛି ପୂରି
ଦୟାର ଝରଣା ଶାନ୍ତିର କରୁଣା
ପୋଖରୀରେ ପୂରିଥାଏ ସେ ଜଳ ।୨।

ସେ ନୀରରେ ଯେବେ ସ୍ନାନ
କରିବାକୁ ଅଛି ତୋ ମନ
ପଶିବା ଆଗରୁ ଚିନ୍ତା କରି ପାରୁ
କେତେ ସେ ଗମ୍ଭୀର କେତେ ଯେ ଥଳ ।୩।

ବାଞ୍ଛାବଟ ମୂଳରେ ବସି
ମନସ୍ତାପ ହର ତୁ ଆସି
ପଶିଲେ ଶରଣ ହୋଇବୁ କାରଣ
ହରଣ ହୋଇବ ଦୁଃଖ ଜଞ୍ଜାଳ ।୪।

ଗରୁଡ଼ ପଛରେ ଦେଖିବୁ
ଦୂରୁଁ ହେ ଅନନ୍ତ ଡାକିବୁ
କେଉଁ ଦେବ ଜଣେ ଚାହିଁଛି କି ଶୋଭେ
ବସିଛି ଶଙ୍ଖର କରି ଖଣାଳ ।୫।

ପୌର୍ଣ୍ଣମାସୀ ଜଗିଛୁ ବାଟ
କାହିଁ ଯିବ ସେ ନନ୍ଦ ଗୃହ
ନ କଲେ କରୁଣା ହେବ ବାଟ ବଣା
କେବେ ମୁଁ କରିବ ଆଜ କଟାଳ ।୭।

—o—

ଆହେ ମହାବାହୁ
(ଘରିଗଲ ଭବଜଳେ ଗୃହ ଗୃହ)
ସବୁ ଗୃହ୍ଣା ତାଙ୍କୁ
ଏ ନବୀନ ସୁନ୍ଦର ଘନ ଶ୍ୟାମଙ୍କୁ (ଘୋଷା)

କାମିନୀ କାଞ୍ଚନ ଚଉରେ ଘେର ନଟବର ବେଶେ ବଂଶୀଧର
ଗୋପ ବୃନ୍ଦାବନେ ଦୋଳ ଖେଳୁଥାନ୍ତି
କାଇଞ୍ଚ ମାଳଆ କାଳଆଙ୍କୁ ।୧।

ପାଦରେ ନୂପୁର ରଣ ଝଣ କଟିରେ କିଙ୍କିଣି କଣ କଣ
କଦମ୍ବ ପାଦପେ ବଂଶୀ ବାହୁଛନ୍ତି
ରାଧା କଲେ କରମାଳ ତାଙ୍କୁ ।୨।

କଳୁଷିତ କଲେ ବଜ୍ରବାଳ କାମ ରୂପୀ ସେହୁ ବନମାଳ
କାମପାଳ ଭାଇ ସଙ୍ଗତରେ ଥିଲେ
ଜଣା ନ ପାଇ କହୁ ତାଙ୍କୁ ।୩।

ଶିରେ ଶିଖିଚୂଳ ବନମାଳ ହସୁଛନ୍ତି କେତେ ସୁମଞ୍ଜୁଳ
କହେ ପୌର୍ଣ୍ଣମାସୀ ଗୃହ୍ଣାଲେ ସଜନୀ
ନନ୍ଦ ନନ୍ଦନ ଚତାକଟାଙ୍କୁ ।୪।

(ଜଣାଣ)

ହେ ଶିଶୁ ଗୋସାଇଁ
ଭୁଲି ଗଲଣି କି ତୁମ୍ଭେ
ଛାଆଁ ଇ ଶୋଇ

ଆଦ୍ଧୁଦାରୁ ମୂଳେ ଘର କରି ବସିଲ ଠାକୁର
ଚନ୍ଦ୍ରା ଚୁଡ଼ ଚନ୍ଦ୍ରାମଣି ରଖିଲ କାହିଁ ।୧।
ଫାନ୍ଦରେ ପକାଇ ମତେ ଦୁଃଖ ଦେଲ ନାନା ମତେ
ଦୁଃଖ ମୋର ଦେଖି ତୁମ୍ଭେ ଗଲ ଦୂରେଇ ।୨।
ଅକପଟ ତୁମ୍ଭ ମନ ଜାଣିଥିଲି ଭଗବାନ
ନିଷ୍ଠୁର ହୋଇଲ ମୋତେ ଆଶ୍ରଯ଼ ଦେଇ ।୩।
ପର ଆପଣାର ଭାବ ହୃଦରେ କି ଦେଲ ଠାବ
ଫଣିନ୍ଦ୍ରାସନେ ବସିଛ ଗୁପତେ ରହି ।୪।
କେଉଁ ଗୁମ୍ଫା ମଧ୍ୟେ ଯାଇ ନିଶ୍ଚିନ୍ତେ ନିର୍ଭଯ଼େ ରହି
ଦୁଃଖିର ଦୁଃଖ କ୍ରନ୍ଦନ ଶୁଭିଲ ନାହିଁ ।୫।
ଅଗମ୍ୟ ସେ ଗୁମ୍ଫା ବାଟ ଯିବାକୁ ନୁହେଁ ନିକଟ
ପୌର୍ଣ୍ଣମାସୀ ରହେ ତୁମ୍ଭ କୃପାକୁ ଚାହିଁ ।୬।



(ମୁଢ଼ ମନରେ ଶନ୍ତ ଜଗନ୍ନାଥଙ୍କୁ)

କଳା କାହ୍ନୁରେ
ମତେ ମନେ ରଖିଥା
ମଉନେ ବସି ନ କହୁଛ କଥା (ଘୋଷା)

ସମସ୍ତ ଜଟିଳ ନୁହଁ ଚନ୍ଦ୍ରାଶୀଳ
ହୋଇଲାଣି ଆସି ସଙ୍କଟ ବେଳ
ଚିନ୍ତାମଣି ଯେବେ ଚିନ୍ତାରେ ରହିବ
ଦୁନିଆଁ ଅନ୍ଧାର ହେବ ଜାଣିଥା ।୧।
କିବା ରାଧାରାଣୀ ମାନ କରିଲେଣି
ସେ ଅପମାନ କି ମନେ ବାଧିଲା
ରାଧା କରି କୋପ ହୃଦେ ଦେଲେ ଚାପ
ଚନ୍ଦ୍ରା କରି ମନେ ପାଉଛ ବ୍ୟଥା ।୨।
ହୋଇ କର୍ଣ୍ଣଧାର ନ ହୁଅ ଅଧିର
ମୋହନ ମୁରଲୀ ନାହିଁକି କର
କଦମ୍ବ ମୂଳରେ ଜମୁନା କୂଳରେ
ରାଧା ରାଇ ନାମେ ବଂଶୀ ବାହୁଥା ।୩।
କିବା ଦେବ କୂଳ ହେଲେଣି ଆକୁଳ
ଦାନବ ନାଶନେ କରୁଛ ଚିନ୍ତା
ପୌର୍ଣ୍ଣମାସୀ ଡାକେ କୃପା ମିର ଟିକେ
ଚନ୍ଦ୍ରା ଗୁଣ୍ଡ ମୋର ଶିରେ ଢାଳୁଥା ।୪।

—*—

(ଭଜମନ ପଙ୍କଜ ଡୋଳା)

ଭଜମନ ଗୁରୁଦେବଙ୍କୁ
ଭଜିଲେ ପାଇବୁ ମୁକ୍ତି ଧାମକୁ
ଗୁରୁଦେବ ଚରଣ ତଳେ ମନ ଲଗା ସେବ ନିଷ୍ଠାଳେ
ହୃଦ ସିଂହାସନେ ବସାଇ ତୁ ଜଗ
ତାଙ୍କର ଯିବାଆସିବା ବାଟକୁ ।୧।

ଗୁରୁଙ୍କୁ ତୁ ପାଇଲେ ସେବ          ଦେଖିବୁ ତୁ ଉଦୟ ରବି
ଗୁରୁ କଲେ ଦୟା ପାଇବୁରେ ମନ
ଗୁରୁ ରୂପେ ସେହି ଭଗବାନଙ୍କୁ ।୨।
ଦେବକୀ ଦେହାର ଦୂଷଣ          ଦୁଃଖ କାରାଗାର କଷଣ
କଷ୍ଟରୁ ଉଦ୍ଧାର କରିଥିଲେ ତାଙ୍କୁ
ଦେଇଥିଲେ ପର କେତେ ସୁଖକୁ ।୩।
ଅଷ୍ଟମଲ୍ଲ ମାରିବା ପାଇଁ          ରହିଥିଲେ ଗୋପରେ ଯାଇ
ନନ୍ଦ ଯଶୋଦାଙ୍କୁ ପୁତ୍ର କଷ୍ଟରୁ ସେ
ଉଦ୍ଧାର କରି ମାରିଲେ କଂସକୁ ।୪।
ପୌର୍ଣ୍ଣମାସୀ କରୁଛି ଆଶା          ଗୁରୁପାଦ କରି ଭରଷା
ଏଭବ ମାୟା କୂପରୁ ଉଦ୍ଧାରିବ
ଆଶା ମୋର ପଦ ମକରନ୍ଦଙ୍କୁ ।୫।



(ଅରେ ମନ ଭ୍ରମି ନମର)

ମନ ଭୁଲି ଯିବ ଏଣିକ
ଭବ ସମୁଦ୍ରରୁ ଗୁରୁ ମଣିକ (ଘୋଷା)

ପାଇଲେ ତୁ ଗୁରୁଙ୍କ ଦେଖା          ସାଙ୍ଗ ଛାଡ଼ି ନଯିବୁ ଏକା
ଛାଡ଼ି ଦେଲେ ସାଙ୍ଗ ଆଉ ନପାଇବୁ
ଏକଥାକୁ ଭୁଲି ଥିବୁ ଜାଣିକ ।୧।
ପଥ ଦେଖା ଅଟନ୍ତି ଗୁରୁ          କମାଇ ତୁ ଭ୍ରମିଣ ମରୁ
ଅନ୍ତିମ କାଳରେ ସେହି ଏକା ସଖା
ଦୃଢ଼ ଭକ୍ତିରେ ତୁ ଗୃହା ଚେଣିକ ।୨।

ସେହି ଯେଉଁ ବାଲ ପ୍ରାନ୍ତରେ    ଗୁରୁ ତୋର ଥିବେ ସେଠାରେ
ପଥିକୁ ପଚାରି ଖୋଜ ଖୋଜ ଯାଇ
ପାଇବୁ ମନ ଅଭୟ ବାଣୀକ ।୩।
ଗୁରୁ ବ୍ରହ୍ମା ବିଷ୍ଣୁ ମହେଶ    ସେ ଅଜ୍ଞାନ ତିମିର ନାଶ
କରି ଜ୍ଞାନ ଚକ୍ଷୁ ତୋତେ ଦେବେ ସେହି
ନୋହିବୁ ତୁ ଆଉ ବାଟବଣା କ ।୪।
ବାଟରେ ନାବିକ ବସିଛି    ପଇସା ସେ ନ ନେବେ କିଛି
କହେ ପୌର୍ଣ୍ଣିମାସୀ ଗୁରୁ ତତେ ନେବେ
ଋଷିମାନେ ଯାଇଥାନ୍ତି ଯେଣିକ ।୫।

—o—

ଆରେ ଭଜ ମନ

(ତାଳ–ଏକତାଳ)

ଆରେ ମୂଢ଼ଜୀବ
ଦୟାମୟ ଦୟାଳୁଙ୍କୁ ହୃଦେ ଭାବ (ଘୋଷା)
ସଂସାର ଜଞ୍ଜାଳେ ହୋଇ ଛନ୍ଦ    ହରିନାମ ପ୍ରେମେ ନୋହୁ ବାନ୍ଧ
ଆଉ କେତେ କାଳ ରହିବୁ ସଂସାରେ
ହରି ନାମ ହୃଦେ ଦିଅ ଠାବ ।୧।
ଶରୀରେ ପୋଷିଛୁ ପାପ ଯୋକ    ହରିନାମ ରୂପୀ ଗୁଣ୍ଡା ଯୋକ
ଶରୀର ଭିତରେ ପଶି ଝିଙ୍କାରିବେ
ପାପ ନ ପାଇବ ଆଉ ଠାବ ।୨।
ଧନ ଜନ ଅରଜନ କରି    ଶେଷକୁ ହୋଇବୁ ତୁ ଭିକାରୀ
ଚିନ୍ତାମଣି ନାମ ଚିନ୍ତରେ ସୁମନ
'ପ୍ରେମାନନ୍ଦ ପ୍ରେମ ସ୍ରୋତେ ବୁଡ଼ ।୩।

ହରି ନାମେ ଯେଉଁ କଳ୍ପତରୁ ସମନ ଦେଖି ଡରିବ ଦୂରୁ
ହରିନାମ ତରଣୀରେ ବସିମନ
କହେ ପୌର୍ଣ୍ଣମାସୀ ନାମ ଚୁମ୍ବା ।୪।

—*—

(ଆରେ ମନ ଭ୍ରମି ନ ମର)
ଆସ ଆସ ଦେଖିବ ସାଙ୍ଗ
ହଟିଆ ନାଗର କହ୍ନାଇ ରଙ୍ଗ
ହରିବୋଲ ଚଣ୍ଡେ ନରତ
ତା ମଧ୍ୟରେ ଖେଳେ ଅନନ୍ତ
ହୋଇଣ ସେ ଉଭା ପାଉଛନ୍ତି ଶୋଭା
ଫୁଲମାନେ ଭରି ଉଠଇ ଅଙ୍ଗ ।୧।
ସେବାକାଙ୍କ୍ଷ ଲଗି କସନ୍ତି
କର୍ପୂର ତାମ୍ବୁଳ ଭୁଞ୍ଜାନ୍ତି
ଦର୍ଶନେ ଶ୍ରୀମୁଖ ହରେ କୋଟି ଦୁଃଖ
ଚନ୍ଦନ ଚର୍ଚ୍ଚିତ ଶୋଭର ଭଙ୍ଗ ।୨।
ବାଦ୍ୟ ସ୍ୱନ ଶୁଭେ ଗହଳ
ଭକ୍ତେ ଯୋଡ଼ି ହସ୍ତଯୁଗଳ
ନାନା ସ୍ତବ ପାଠ କରି ଭକ୍ତ ଶ୍ରେଷ୍ଠ
ଉଧାର ହେବାକୁ ଭବ ତରଙ୍ଗ ।୩।
ଗୃହ୍ନିଲେ ସେ ଚନ୍ଦ୍ରବଦନ
ଶାନ୍ତ ଭକ୍ତ ଉପୁଯେ ମନ
ବ୍ରଜ ମୋହନଙ୍କୁ ଦେଖି ସେ ରୂପକୁ
ପୌର୍ଣ୍ଣମାସୀ କରୁ ପବନ ଅଙ୍ଗ ।୪।

—*—

ମୂଢ଼ ମନରେ
ଖବୁଛୁ ତୁ କାହାକୁ,
ମନ ତୁରେ ଖବ ଏବେ କପଟ ଛଡ଼ିବୁ ଉଦେ
ଦିବ୍ୟଲୋଚନେ ଗୃହ୍ଣାଁ ଅନନ୍ତ ଧାମକୁ ।୧।
କାହିଁକି ଭବେ ଅଇଲେ କପଟ ଯେତେ ସେ ହେଲେ
ଭବ ସଂସାର ବନ୍ଧନ ତୁଟେନା ତାଙ୍କୁ ।୨।
ପିତା ମାତା ବନ୍ଧୁ ଘର ସକଳ ତେଜିଲେ ସେହି
ସନ୍ନ୍ୟାସୀ ଯୋଗୀ ଋଷିଏ ହେଲେ ସାଙ୍ଗକୁ ।୩।
ଶିଶୁ ଅନନ୍ତଙ୍କ ନାମେ ସଂସାର ସାଗର ଭ୍ରମେ
ଅନନ୍ତ ନାମ କରିଛୁ କାବୁ ତାହାଙ୍କୁ ।୪।
ଯେତେ ସାଧୁସନ୍ଥ ଛନ୍ତି ଦର୍ଶନେ ତୃପ୍ତି ଲଭନ୍ତି
ନଜରସେ କର ଟାଣିନିଏ ପାଶକୁ ।୫।
ତପନ ତନୟା ତଟେ ନିବାସୀଙ୍କ ପାଏ ଖଟେ
ତାଙ୍କ କପଟିଆ ଯଣେ ନଭୁଲ ତାଙ୍କୁ ।୬।
ଜଣାଉଛି ଦୁଃଖୀଜନ ଲୋଡ଼ାନାହିଁ ଧନମାନ
ପୌର୍ଣ୍ଣମାସୀ ହୃଦେ ଦିଅ ସେହି ଖବକୁ ।୭।

—*—

ଜୟ ଜୟ ଶିଶୁ ଅନନ୍ତ
ଜୟ ହେ ବଳରାମ
ମାୟା ସଂସାରକୁ ଆସିଣ
କମ୍ପା ହେଲ ଜନମ ।୧।
ମାୟାଧର ତୁମ୍ଭେ ବୋଲଅ
ତୁମ୍ଭେ ବୈକୁଣ୍ଠ ବାସୀ

ଲକ୍ଷ୍ମୀ ଯାହାଙ୍କର ଚରଣେ
ସଦା ସର୍ବଦା ଦାସୀ ।୨।
ବେଦ ବ୍ରହ୍ମା ଦେବେ ସକଳ
ଯାକୁ ସ୍ତୁତି କରନ୍ତି
ସୂର୍ଯ୍ୟ ଚନ୍ଦ୍ର ଯାହା ଆଜ୍ଞାରେ
ଆତ ଯାତ ହୁଅନ୍ତି ।୩।
ବୈକୁଣ୍ଠ ଉପେକ୍ଷୀ ସେ କମ୍ପା
ମର୍ତ୍ତ୍ୟ ଭୁବନେ ଆଶା
କେଉଁ ସୁଖ ଏଠି ପାଇବ
ବୋଲି ଅଛୁ ଭରସା ।୪।
ପାପମୟ ଏହି ଜଗତ
ପାପେ ପୂରି ରହିଛି
ବଇକୁଣ୍ଠ ସୁଖ ଏଠାରେ
ପ୍ରଭୁ ନାହି ତ କଛି ।୫।
ଗରୁଡ଼ ଯାହାର ବାହାନ
କ୍ଷଣେ ପୃଥ୍ୱୀ ଭ୍ରମଇଁ
ଅନନ୍ତ ଶଯ୍ୟନେ ଯାହାକୁ
ନିଦ୍ରା ଲାଗଇ ନାହିଁ ।୬।
ଲକ୍ଷ୍ମୀ ସରସ୍ୱତି ଦୁହିଁଙ୍କ
ମଧ୍ୟେ ହେଲା କି କଳି
ଗରୁଡ଼ ଅନନ୍ତ ଦୁହିଁଙ୍କ
କଳି ଗଲାକି ବଳି ।୭।
ଭକ୍ତଙ୍କ ଆରତ ଡାକକୁ
ସହି ପାରିଲ ନାହିଁ

ବୈକୁଣ୍ଠ ଉପେକ୍ଷି ଆସିଛ
ମନେ ଖେଦକୁ ବହି ।୮।
ଆର୍ତ୍ତୀଙ୍କ ଆରତ ନାଦ କ
ପ୍ରଭୁ ବାଧିଲ ମନେ
ଭକ୍ତଙ୍କ କ୍ରନ୍ଦନ ଡାକକ
ପ୍ରଭୁ ଶୁଣିଲ କର୍ଣ୍ଣେ ।୯।
କିବା ଲକ୍ଷ୍ମୀମାତା ଚଢ଼ିଲେ
ବଇକୁଣ୍ଠରୁ ସତେ
ଅନନ୍ତ ଶଯ୍ୟାରୁ ଆସିଛ
ଅନନ୍ତଙ୍କ ସହିତେ ।୧୦।
ମର୍ତ୍ତ୍ୟେ ଆସି କସ କରିବ
ଭୂମି ପାଷାଣ ହୃଦ
ପ୍ରଦ୍ୟୁମ୍ନ ପୁତ୍ରକୁ ମାରିଲ
ମନେ ନ ବହି ଖେଦ ।୧୧।
କଂସ ମାମୁଁ ଭୂମି ମାରିଲ
ମନେ ଆନନ୍ଦ ବହି
ଯଦୁ ବଂଶ ନାଶ କରିଲ
କୂଟ କପଟେ ରହି ।୧୨।
ଏବେ ସେ କାହାକୁ ମାରିବ
କସ ମନେ ପାଞ୍ଚିଛ
କଳିଙ୍ଗା ସୁରକୁ ମାରିବ
ବୋଲି ମନ୍ଦନ ଅଛ ।୧୩।

କଳିକୁ ନବାର ସଙ୍ଗକୁ
ମର୍ତ୍ତ୍ୟେ ସ୍ଥାପନା କରି
ପୌର୍ଣ୍ଣମାସୀ ଦେଖୁ ମେ ରୂପ
ପ୍ରଭୁ କରୁଣା କର ।୧୪।

—o—

(ଲଟିଷ୍ଟ ଲୀଳା ନଳାଞ୍ଜଳରେ)
ମନରେ ଭାବ ଗୋପୀନାଥଙ୍କୁ
ନଟବର କହ୍ନା ବଂଶୀଧରଙ୍କୁ (ଘୋଷା)
ଗୋପରେ ବପତ୍ତି ଦେଲା ସୁରପତି
ରଖିଥିଲେ ପଦ୍ମ ଗୋପବାସୀଙ୍କୁ ।୧।
ଅକ୍ରୂର ଯେବେଳେ ଭାବଥିଲା ଜଳେ
ଜଳେ ସ୍ଥଳେ ଦେଖେ କଳାକୃଷ୍ଣଙ୍କୁ ।୨।
ଧ୍ରୁବ ପ୍ରହ୍ଲାଦ ଅଙ୍ଗିରା ନାରଦ
ଜପୁଥିଲେ ମନ ତାଙ୍କ ନାମଙ୍କୁ ।୩।
କୁରୁସଭା ତଳେ ଦ୍ରୌପଦୀ ବକଳେ
କୋଟିବସ୍ତ୍ର ଦେଇଥିଲେ ତାହାଙ୍କୁ ।୪।
ହୃଦ ମଧ୍ୟେ ଦେବ ସେହି ରୂପ ଠାବ
ଚନ୍ଦ୍ରା ଚୁଡ଼ ଚନ୍ଦ୍ର ଚନ୍ଦ୍ରାମଣିଙ୍କୁ ।୫।
କାଳନ୍ଦୀ ହ୍ରଦରେ କଂସର ଛଳରେ
ଦଳିଥିଲେ ପଦ୍ମ କାଳଫଣୀଙ୍କୁ ।୬।
ଗୁରୁ ପାଦଧ୍ୟାୟୀ ପୌର୍ଣ୍ଣମାସୀ କହି
ଭାବୁଥିବ ମନ ସେହି ରୂପଙ୍କୁ ।୭।



(ଜୟ ହେ ଅଖିଳ ତାତ ବ୍ରଜବଦ୍ଧାଗ ବୃତ୍ତେ)

ଶିଶୁ ଅନନ୍ତଙ୍କ ନାମ କର ଭଜନ
ତୁଟିଯିବ ମାୟା ମୋହ କାଳ ବନ୍ଧନ

ଆସିଛନ୍ତି ସଙ୍କଟ ବେଳ ପୃଥ୍ୱୀଦେବ ଟଳମଳ
ଜ୍ଞାନ ମନ୍ଦରକୁ ତୋର କରନାହିଁ ନାରଖାର
ପଥ ନ ହୁଡ଼ ବାଛ ତୋ ମୁକ୍ତିର ସ୍ଥାନ ।
ପଥ ପ୍ରଦର୍ଶକ କେହି ବୁଲିଲେଣି ଏହି ମହୀ
ତାହାଙ୍କୁ ଚିହ୍ନିବା ପାଇଁ ତାଙ୍କ ପିଛୁ ଧର ତୁହି
ସ୍ଥିର ଚିତ୍ତେ ନିଅ ମନ ତାଙ୍କ ସନ୍ଧାନ ।
କିଏ ସେହି ଯୋଗୀଜନ ବୁଲୁଛନ୍ତି କି କାରଣ
କି ଅବା ଅନନ୍ତ ଗୁର କି ଅବା ସେ ମାୟାଧର
ବୁଝିବା ସଙ୍କଟ ଅଟେ ତାଙ୍କୁରେ ମନ ।
ସେହି କମମାୟୁ କାନ୍ତ ଯତ୍ତ ବଳଗାମ ଜେ୍ୟାଣ୍ଡ
କାହ୍ନୁ ଆସି କି କରନ୍ତି କି ମନ୍ତ୍ର ଦେଶେ ଗୁଣନ୍ତି
ତାଙ୍କ ଦରଶନ ଲାଗି ମନ ଉଚ୍ଛନ୍ନ
ତାଙ୍କର କରୁଣା ହେଲେ ଏ ଭବୁ ତରିବୁ ଭଲେ
ମନ ତୁଟରେ ସ୍ଥିର ହୋଇ ତାଙ୍କ ପାଦ ପଦ୍ମ ଧ୍ୟାୟି
ସପ୍ତପର୍ଣୀ ବାସୀ ପଦେ ଲଗାରେ ଧ୍ୟାନ
ବାଲ୍ମୀକି ମନ୍ଦର ବାସୀ ଗୁପ୍ତ ଗୁମ୍ଫା ମଧ୍ୟେ ବସି
କଳ୍ପତରୁ ତାଙ୍କ ନାମ କଳ୍ପନା ହରଣ କାମ
ପୌର୍ଣ୍ଣମାସୀ ଖବୁ ବସି ଗନ୍ଧ ଗଞ୍ଜନ ।

**

ଆରେ ବାଇମନ

ଦେଖିଛୁକି ହୃଦଭରେ ମୋ ଗଣ୍ଠିଧନ ।୦।

ଖୋଜିଲି ନବ ପାଟଣା ବାଟ ମୁଁ ହୋଇଲି ବଣା
ନ ପାଇ ତାର ଠିକଣା
ହେଲି ଅଜ୍ଞାନ ।୧।

ହାଟ ବାଣ୍ଡ ପାଇକଙ୍କୁ ପଚ୍ଛରି ବୁଝିଲି ତାଙ୍କୁ
ନ ଦେଲା ଉତ୍ତର କିଛୁ
ନ ଦେଲେ କାନ ।୨।

କେଉଁ ଗୁମ୍ଫା ମଧ୍ୟେ ସ୍ଥିତ ଭେଦ ନ ପାରେ ମୋ ମତି
ଗଲି ମୁଁ ନଦୀ ଚଳି
ଗିରି କାନନ ।୩।

ସେଠାରେ କାଳିଆ ଏକ ବସି କରୁଅଛି ଡାକ
କହୁଅଛି ତତ୍ତ୍ୱବାଣୀ
ସେ ବ୍ରହ୍ମଜ୍ଞାନ ।୪।

କରୁଣା ଚକ୍ଷୁରେ ଗୁହିଁ ଦିବ୍ୟ ବଚନ ଭାଷଇ
କହେ ପୌର୍ଣ୍ଣମାସୀ ଭୁବ
ପାଇଛୁ ଚନ୍ଦ୍ର ।୫।

—o—

(ଆରେ ମନ ଭ୍ରମି ନ ମର)

ପାପ ମନ କର ଗୁହାରି
ଭବ ଯନ୍ତ୍ରଣା ସେ ହେଲାଣି ଭାରି
କେଉଁ ଜନ୍ମେ କରିଥିଲୁ କି ପାପ ଜନମିଲୁ ଏ ଭବ କୂପ
କପଟ ମନରୁ ଭବୁ ତରିଯିବୁ
ଥରେ ଚିନ୍ତା କରି ନ ପାରୁ ଧରି ।୧।

ଆଜ ଏ ଅବସ୍ଥା ବଷରେ   ଲୋଭ ଭୁଲି ନ କର ବାରେ
ଅଖିଳ ବ୍ରହ୍ମାଣ୍ଡ ନାଥ ଯେ ଅନନ୍ତ
ଶରଣ ପଶରେ ପାଦେ ତାଙ୍କର ।୨।
ପ୍ରଭୁ ବଳରାମ ଗୋସାଇଁ   ବାହୁଡ଼ାଯାଆ ଚଳେ ତୁ ରହି
ବଇକୁଣ୍ଠନାଥ ସେଠାରେ ଦେଖିବୁ
ଭବ ଯାତନାରୁ ହେବୁ ତୁ ପାର ।୩।
ଧରିଛୁ ଅନନ୍ତ ଚରଣ   ରଖିବ ନ କର ବାରଣ
ନୀଳାଚଳ ନାଥ ଲୀଳାରେ ରହିଛ
ପୌର୍ଣ୍ଣମାସୀକ  ରଖିବ ଉଦ୍ଧାର ।୪।



(ବରଜ ବର ମନ ଭଜନ କର)
ମାୟାଧର ହେ ମାୟାକର କାହିଁକ
ଚରଣାଶ୍ରିତ ଜନକୁ ଦୟା ନାହିଁକ ।
ହୋଇ ଦୟାକୁ ସୁ ତୁଷ   କମାଇଁ କର ନିରାଶ
ତୁମ୍ଭ ପାଦ ପଦ୍ମ ରେଣୁ ଦେବ ନାହିଁକ ।୧।
ବେଳ ହେଲାଣି ନିକଟ   ନକର ଆଉ କପଟ
ସମନ ଜଗିଛୁ ବାଟ ନେବା ପାଇଁକ ।୨।
ନୁହଁଇ ମୁଁ ଯୋଗୀଜନ   ଭଜିବାକୁ ରାଧାରମଣ
ମୋ ଜଞ୍ଜାଳସାର ଭାର ହେଲା ଏଣିକ ।୩।
ବାରେ ଫେଡ଼ ମୋ କଷଣ   ପ୍ରଭୁ ହେ ଫଣୀନ୍ଦ୍ରାସନ
ନିଷ୍ଠୁର ହେଉଛ ଦୁଃଖୀନାବ ବାଣ୍ଟିକ ।୪।
ଭସାଇ ଅଗାଧ ଜଳେ   ଲୀଳାକାର ନୀଳାଚଳେ
କାତର ଜନ କନ୍ଦନ ଶୁଭେ ନାହିଁକ ।୫।

ମନ ସବେ ତବ ନାମ        ଗୁଣୁଛି ଜପୁ ଏ ଅଧମ
ପୌର୍ଣ୍ଣମାସୀ କହେ ପ୍ରଭୁ କୃପା ହେଉକ ।୬।

✳✳✳

(ହଅଁ ଦେଖି ଯିବାଗୋ ସଖି)

ନନ୍ଦପୁଅ ମୁରଲୀଧାରୀ
ଭଜମନ ଶିଶୁ ଅନନ୍ତ ହରି
ମଣିମୟ ପୁରେ        ସେଜ ସୁପାନ୍ତରେ
ହଳାସେ ମଜିଲୁ କୁଟୁମ୍ବଧରି ।୧।
ମାୟା ସ୍ନେହ ବାନ୍ଧ        ହେଉଅଛୁ ଧନ୍ଦ
(ମନ) ହେନେ ନ ଭଜଲୁ କୃଷ୍ଣ ମୁରାରି ।୨।
ଗୁରୁ ନାମ ଏକା        ପଥକୁ ତୋ ସଖା
ଗୁରୁମନ୍ତ୍ର ଭବୁ କରିବ ପାରି ।୩।
ଗୁରୁ କଲେ ଦୟା        ଛୁଟିଯିବ ମାୟା
ଗୁରୁକର୍ଣ୍ଣଧାର ପଥେ ତୋହରି ।୪।
ମୃତ୍ୟୁ ପରେ ସଖା        ନ ଦେବେ କେ ସଖା
ଗୁରୁ କୃପା ନାବେ ଯିବୁ ତୁ ତରି ।୫।
ଜ୍ଞାନ ମନ ଦେଇ        ନିଷ୍କାମେ ତୁ ରହି
ପୌର୍ଣ୍ଣମାସୀ କହେ ଜପରେ ହରି ।୬।



(ଭଜମନ ଜଗନ୍ନାଥଙ୍କୁ)

ଭଜମନ ନାରାୟଣଙ୍କୁ
ଶରଣ ରକ୍ଷଣ ଦାରୁବ୍ରହ୍ମଙ୍କୁ

ଅନନ୍ତ ମୂରତି ପ୍ରଭୁ ଲକ୍ଷ୍ମୀକାନ୍ତ
ଯଦୁକୁଳ ପତି ଦେବ ଜଗନ୍ନାଥ
ତାଙ୍କ ନାମ ମାଳା ହୃଦେ ରଖି ଖେଳା
ଭୟ ନ ଥିବ ତୋ ଯମ ଦଣ୍ଡକୁ ।୧।
ଅଜାମିଳ ପାପି ଯାଇଥିଲ ତରି
ଦୁଃଖେ ପ୍ରହଲ୍ଲାଦ ବୋଲେ ହରିହରି
ହରିନାମ ଘୋଷି ବାଲମିକ ଋଷି
ଗରୁଡ଼ ଧାଉଛି ପାଦପଦ୍ମକୁ ।୨।
ହରି ହରି ବୋଲି ଯାଅ ମନ ତରି
ହରିନାମ ମନ୍ତ୍ର ନ ଦେବୁ ପାଶୋରି
ବନସ୍ତେ ହରିଣୀ ଡାକଥିଲ ପୁଣି
ସୁଦାମା ଦରିଦ୍ର ଦୁଃଖ ହାରିଙ୍କ ।୩।
ବୀର ହନୁମାନ ଧରି ରାମନାମ
ସପତ ସମୁଦ୍ର କଲ ଅତିକ୍ରମ
ଯେଉଁ ପାଦୁ ଝରି ବହେ ଗଙ୍ଗାବାରି
ପୌର୍ଣ୍ଣମାସୀ ମନ ପାଦ ରେଣୁକୁ ।୪।



ପ୍ରଭୁ ଜଗତ ସାଇଁ
କେଉଁ ଦୋଷ ମୋର ଅବା ଗଲ ରହି (ଘୋଷା)
ଲକ୍ଷ୍ମୀ ପାଶେ ଥାଇ ପ୍ରଭୁ ଭବଗ୍ରାହି
ପଶାଖେଳରେ ଅଛକ ଭୋଳ ହୋଇ ।୧।
ଅତି ଅକିଞ୍ଚନ ମୁହିଁ ଦୀନ ହୀନ
ପ୍ରଭୁ ମୋ ଡାକ କି କାନେ ବାଜୁ ନାହିଁ ।୨।

ଜଗତ କରତା          ବିଶ୍ୱ ପିତା ମାତା
ପାପ ଦୋଷ କ ମୋହର କଟି ନାହିଁ ।୩।
ଅହଲ୍ୟା ନାରୀର          କେତେ ବଡ଼ ପାପ
ତାଙ୍କୁ ତାରିଥିଲ ପଦ ପାଦ ଦେଇ ।୪।
ଜନ୍ମେ ପୌର୍ଣ୍ଣମାସୀ          ଯାହା ପାପ ଅଛି
ତୁମ୍ଭ କୃପା ବାରିରେ ସେ ଯାଉ ଧୋଇ ।୫।

●

ଆସ ଆସ ହୃଦ ମନ୍ଦିରେ
ହୃଦ ଆନନ୍ଦ ଦାତା
ଆନନ୍ଦେ ଆନନ୍ଦେ ପରଶ
ବିଶ୍ୱମୟ ଦେବତା
ଆଣିଛୁ ଆନନ୍ଦ ସାଗରୁ
ଭରି ନିର୍ମଳ ଜଳ
ଉଲ୍ଲାସେ ଚରଣ ଧୋଇବି
ମନ କରି ନିର୍ମଳ
ଶ୍ରଦ୍ଧା ଗୁଙ୍ଗୁଡ଼ରେ ରଖିଛୁ
ନବ ଭାବ କୁସୁମ
ଘୋରି ରଖିଅଛୁ ପାଷାଣେ
ହୃଦ ପ୍ରେମ ଚନ୍ଦନ
ଭକତି ତୁଳସୀ ପତର
ବାଛୁ ବାଛୁ ମନରେ
ଗୁନ୍ଥିଛୁ ମଞ୍ଜରୀ ମାଳାଟି
ଲମ୍ବାଇବି ଗଳାରେ

ଜ୍ଞାନ ଧୂପ ଦୀପ ଫୁଲକେ
ଦେବୀ ଦୟା ସାଗର
ଆସ ହୃଦ ଭକ୍ତ ବଦାସି
ହୃଦ ଗଗନ ମୋର
କୃପା ଘନ ସୃଜ ଅମ୍ବରେ
ଭରି କୃପା ସଲୀଳ
ମୋର ଏ ତପତ ପରାଣ
ଜାଳ ସାନ୍ତ୍ୱନା କର
କିଛି ନାହିଁ ମୋର ପ୍ରଭୁ ହେ
ତୋର ସମ୍ବଲ ଯାହା
ପାଦ ପଦ୍ମ ତଳେ ଦେଉଛି
ନେବ ଆନନ୍ଦେ ତାହା
ସାହି ସାହି ଗୁରୁ ସ୍ୱାମୀ ହେ
ସାହି ହେ ନାରାୟଣ
ସାହି ବୋଲି ଶୋଇ ଉଠିବି
ତବ ଛାୟା ଚରଣ
କେଉଁ ଫଳ ଦେଇ ତୋଷିବି
ସବୁ କରିଛି ଗ୍ରାସ
କେଉଁ ମନେ ଅବା ଚିନ୍ତିବି
ମନ ପାଞ୍ଚ ପ୍ରକାଶ
କେବଣ ନାମକୁ ଜପିବି
ନାମ ଅଶେଷ ଯା'ର
କେଉଁଠାରେ ଭେଟ ପାଇବି
ପୂରିଅଛ ସଂସାର

ମାନସିକେ ପୂଜା କରୁଛି
ନ ଜାଣଇ ଆନକୁ
ପୌର୍ଣ୍ଣମାସୀ ଆଶା କରୁଛି
ତବ ପଦ୍ମ ପାଦକୁ ।



ପ୍ରଭୁ ଦୁଃଖୀ ଜନକୁ
ଦୁଃଖଦେଇ ପାରିଲକି ସୁଖକୁ
ଲୋଡ଼ା ନାହିଁ ମୋର ଧନ ଚରଣାମୃତରେ ମନ
କର ମୋ ହୃଦ ଶାନ୍ତ ବନ୍ଧୁ ଦୟାଳୁ ।୧।
ତୁମେ ପରା ଅନ୍ତର୍ଯ୍ୟାମୀ ଅନ୍ତରେ ଅନ୍ତରେ ଗମି
ଅଜଣା ଆଉ କିଛି ନାହିଁ ତୁମ୍ଭଙ୍କୁ ।୨।
ଅଶାନ୍ତ ବେଦନା ମୋର ଶାନ୍ତ କର ଚକ୍ରଧର
ଖୋଜେନା ମନ ତୁମ ବିନା କାହାକୁ ।୩।
ଭାସିଗଲି ଭବଜଳେ ଆଉ କେ ଆଣିବ କୂଳେ
ତୁମେ ପରା ପ୍ରଭୁ ଥାଉଁ ନନ୍ଦା କାହାକୁ ।୪।
ମୋହପରି ଦୁଃଖୀଜନ ତାରି ଅଛ ଭଗବାନ
ଡାକୁଅଛି ପୌର୍ଣ୍ଣମାସୀ ଦୁଃଖହାରିଙ୍କୁ ।୫।



ଜୟ ଜୟ ବଳଦେବ ଠାକୁର
ଜୟ ବଳଦେବ ଯୁଗାବତାର
ଖଣ୍ଡ ମୋର ମନୁ ସନ୍ତାପ ଘୋର
ଶୁଣିଛୁ ପୂର୍ବରେ କନ୍ଦରପୁର
ଅନ୍ତ ଉତପାତ କଲା ମଣ୍ଡୂର
କେନ୍ଦରପଡ଼ାରେ କର ସଂହାର
ତୁଳସୀଙ୍କୁ କଲ ଗଳାର ହାର ।୧। ହେ ମହାପ୍ରଭୁ...
ତୁଳସୀ ବଣରେ କରିଲ ଘର
ରଖିଲ ସେଠାରେ ଧନ ଭଣ୍ଡାର
ଅଖିଳ ବ୍ରହ୍ମାଣ୍ଡେ ନାମ ଯାହାର
ମୁଁ ଅବା କ କାହିଁ ବର୍ଣ୍ଣିବି ତାର
ବଡ଼ ଠାକୁରଙ୍କ ବଡ଼ ବେଭାର ।୨। ହେ ମହାପ୍ରଭୁ...
ଘୋରସଙ୍କଟବେଳେ କର ଉଦ୍ଧାର
ପୌର୍ଣ୍ଣମାସୀ ଯେ ତୁମ୍ଭରେ ହାଜର
ଗୁହାରି କରିବ ଯୋଡ଼ିଛୁ କର
ଅନାହାରେ ମରୁଛନ୍ତି ଯେ ନର
ଧନ କ ତୁମ୍ଭର ନାହିଁ ଭଣ୍ଡାର ।୩। ହେ ମହାପ୍ରଭୁ...
ଦୁଃଖର ଭେଳାରେ ଭାସେ ସଂସାର
ପାପମୟ ଦେଖ ଭବସାଗର
ତରଙ୍ଗଧାରା ତରଙ୍ଗ ଧରିଛ କର
ଦୟାକୁ ବାନା ଯେ ଅଟେ ତୁମ୍ଭର
ପୌର୍ଣ୍ଣମାସୀ କରେ ପାଦେ ଜୁହାର ।୪। ହେ ମହାପ୍ରଭୁ...
ସଂସାର ରଖ ନ କର ସଂହାର

—o—

ସମତାର ରୂପ ହିଁ ସ୍ୱର୍ଗ । କୁଣ୍ଠା ବା ସନ୍ଦେହ ବିହୀନ ସ୍ଥାନ ହିଁ ବୈକୁଣ୍ଠ । ମର ରାଜ୍ୟରେ ଯେଉଁଠି ଅମରତ୍ୱର ସନ୍ଧାନ କରାଯାଏ ତାହାର ନାମ ହିଁ ମରତ । ଅସୀମକୁ ପ୍ରାପ୍ତ ହେବା ହିଁ ଅମୃତ । ଉଦରେ ଯାହାର ଦୟା, ମୁଖରେ ଯାହାର ଶାସନ, ସେହି ବ୍ୟକ୍ତି ହିଁ ସାଗରର ସ୍ୱରୂପ । ଶାନ୍ତି, ସମ, ଦମ, ପ୍ରେମ, କର୍ମ ଓ ଧର୍ମର ପ୍ରକୃତ ରୂପହିଁ ଈଶ୍ୱର ।

# ଶିଶୁ ଅନନ୍ତ ଗୀତିମାଳା

(ବନ୍ଦନା)

ଜୟ ଜୟ ଗୁରୁଦେବ
ମୂଷଳ ଧାରଣ
ଜୟ ଜୟ ଗୁରୁଦେବ
ଗୁରୁ ଶଙ୍କର୍ଷଣ ।୧।
ଜୟ ଜୟ ଗୁରୁଦେବ
କରୁଣା ବାରିଧି
ଜୟ ଜୟ ଗୁରୁଦେବ
ତୁମ୍ଭେ କୃପାନିଧି ।୨।
ତୁମ୍ଭେ ଅନ୍ତର୍ଯ୍ୟାମୀ ଗୁରୁ
ତୁମ୍ଭେ ଯଦୁପଣ୍ଡ
ତୁମ୍ଭେ ଗୁରୁଦେବ ପ୍ରଭୁ
ତୁମ୍ଭେ ଶାନ୍ତ ମୂର୍ତ୍ତି ।୩।
ତୁମ୍ଭେ ଗୁରୁ ବ୍ରହ୍ମା ତୁମ୍ଭେ
ଅଟ ବ୍ରହ୍ମଜ୍ଞାନ
ତୁମ୍ଭେ ବିଷ୍ଣୁ ଗୁରୁ ରୂପେ
ମର୍ତ୍ତ୍ୟେ ଅବତୀର୍ଣ୍ଣ ।୪।
ତୁମ୍ଭେ ଶିବ ଗୁରୁ ରୂପୀ
ଭୋଳା ମହେଶ୍ୱର
ତୁମ୍ଭକୁ ଚହ୍ନିବା ଶକ୍ତି
ନାହିଁ ଯେ ମୋହର

ଦୟାକୁ ଠାକୁର ଗୁରୁ
ତୁମ୍ଭେ ନାରାୟଣ
ତୁମ୍ଭ ନାମ ଅଟେ ଗୁରୁ
ପତିତ ତାରଣ ।୫।
କୃତାଞ୍ଜଳି ପୁଟେ ଗୁରୁ
କରେ ନିବେଦନ
ଅନୁଗ୍ରହ କର ଗୁରୁ
ଅନୁଗତ ଜନ ।୬।
କଳୁଷିତ ଅଙ୍ଗ ମୋର
କଲୁଷ ହରଣ,
କର ଗୁରୁଦେବ ଦୟା
ନ କର ବାରଣ ।୭।
ହୃଦୟରୁ ଗୁରୁ କମ୍ପା
ଯାଉଛ ଦୂରେଇ,
ଊଣାକ ହେଲ କରୁଣା
ଗୁରୁ ଭବଗ୍ରାହୀ ।୮।
କେଉଁ ଅପରାଧ ଗୁରୁ
କଲି ଶ୍ରୀଚରଣେ
କୃପାରୁ ବଞ୍ଚିତ ଗୁରୁ
କରୁଛ ଅଧିନେ ।୯।
ପୂଜା ଆରାଧନା ହେବା
ହୃଦେ ଜାଗରଣ
ପୌର୍ଣ୍ଣମାସୀ ମନ ରହୁ
ତବ ଶ୍ରୀଚରଣ ।୧୦।

●

ଗୁରୁରୂପୀ ନାରାୟଣ ହେ
ତୁମ୍ଭେ କାହୁଁ ଆସିଲ
ଜୀବନ ପ୍ରଦୀପ ଲିଭିଲା
ବେଳେ ଘୃତ ଢାଳିଲ
ପିପାସିତ ହୃଦେ ଛିଞ୍ଚିଲ
ଆଣି ଅମୃତ ପାଣି
ସଞ୍ଜୀବନୀ ମନ୍ତ୍ର ଫୁଙ୍କିଲ
କର୍ଣ୍ଣ ପରଦା ଟାଣି
ନିସ୍ତେଜ ଏ ଜୀର୍ଣ୍ଣ ଶରୀରେ
କଲ ଶକ୍ତି ସଞ୍ଚାର
ସଚେତନେ ଜୀବ ଉଠିଲା
ପାଇ ପରଶ ତୋର ।୧।
ଜୀବର ପରମ ଶତ୍ରୁକୁ
ଭରିଦେଲେ ଅନ୍ତରେ
ଜୀବ ତାର ବଶ ହୋଇଛି
ଲୋଭ ମାୟାମୋହରେ ।୧।
ଅଜ୍ଞାନ ରୂପକ ନାବରେ
ଗୁରୁ ଭସାଇ ଦେଲ
ଅନ୍ତରାଳେ ଗୁରୁ ଅନ୍ତର
ଧୋଇ କର୍ମା ଉଜ୍ୱଳ ।୩।
ଅପସରି ଯିବା ପଥକୁ
ଗୁରୁ ଦେଉଛ ରୁନ୍ଧି
ନିଦାରୁଣ ହେଲ ଗୁରୁ ହେ
ମୋତେ ନ ଦଶେ ବୁଝି

ଆର୍ତ୍ତତ୍ରାଣ ନାମ ତୁମ୍ଭର
ଆର୍ତ୍ତି କର ହରଣ
ପତିତ ଜନଙ୍କୁ ଉଦ୍ଧାର
ହେ ପତିତ ତାରଣ
ଦୟା ସାଗର ଯେ ବୋଲାଅ
ଦୟା କର ମୋ'ଠାରେ
ଗୁରୁଦେବ କୃପା କରିବ
ଏହି ହୀନ ଜନରେ ।

—*—

ହେ କଳିଆ ହରି ତୋର ନାମଧରି
ଲାଭୁ ଏ ଜୀବନ ଦୀପ
ତୋର ନାମଧ୍ୱନି ଶୁଣୁ କର୍ଣ୍ଣବେଣୀ
ନ ମାନି ସେ ସୋପତିପ —(ରେ କଳିଆ) ୧ ॥
କେତେ ଝଡ଼ ଝଞ୍ଜା ଏ ଜୀବନେ ଖଞ୍ଜା
କରିଛୁ ହେ ଗୋପିନାଥ
ସହିବା ଶକତି ଦିଅ ଯଦୁପତି
ଶରୀର ହେଉ କୃତାର୍ଥ—(ରେ କଳିଆ) ୨ ॥
ଏ ମର ଶରୀର ହେଉ ସୁରକ୍ଷାର
ତହିଁକି ଶୋଚନା ନାହିଁ
ଅଜ୍ଞାନ ତିମିର ନାଶକର ଦୂର
ଜ୍ଞାନର ଆଲୋକ ଦେଇ—(ରେ କଳିଆ) ୩ ॥
ଧରି ଭିକ୍ଷା ଥଳୀ ତୋ ଚରଣେ ଅଳି
କୃପାନିଧି କୃପା ହେଉ

ନାମ ଧନେ ପୂର୍ଣ୍ଣ କର ଏ ଜୀବନ
କଳଙ୍କୀନାମକୁଣ୍ଡ ଗାଉ (ରେ ବଳିଆ) ୪ ॥
ସେପରି ଉଚ୍ଛନ୍ନ ହେଲା ରାଧା ମନ
ମାଧବଙ୍କ ବଂଶୀସ୍ୱନେ
କଳଙ୍କୀ ନାମ ଧ୍ୱନୀ କର୍ମ ଏ ମେଦିନୀ
ଭେଦ ଯାଉ କାନେ କାନେ—(ରେ ବଳିଆ) ୫ ॥
ସତ୍ୟ ସନାତନ ନାମ କରି ଗାନ
ଉଲସି ଉଠୁ ଏ ମହୀ
କଲୁଷିତ ଅଙ୍ଗ ଲଭୁ ସତ୍‌ସଙ୍ଗ
ପ୍ରଭୁ ନାମ ଗାଇ ଗାଇ (ରେ ବଳିଆ) ୬ ॥

—*—

(ସତ୍ୟ) କାହିଁକି ରୁହିଁଲ ଏତେ କଳାମୁଖକୁ
କି ମନ୍ତ୍ର ପଢ଼ି ସେ ମୋହିନେଲା ଚିତ୍ତକୁ
ଶୁଣିଲା ବେଳୁ ତା' ବାଣୀ ନ ରୁଚଇ ଅନ୍ନପାଣି
ସୁମଧୁରେ କହେ କପଟିଆ ଗୀରକୁ,
ଘରେ ରହୁନାହିଁ ମନ ସଦା ହୁଏ ଛନ୍ନ ଛନ୍ନ
ଝୁରଇ ହୃଦୟ ସେହି ଦଗାଦାରକୁ
ନୁହଇ ସେ ଯୋଗୀବର ଜଟାଜୁଟ ନାହିଁ ଶିର
ନ ପିନ୍ଧେ କଷା ବସନ ଆଭରଣକୁ,
ବୋଲଉଛୁ ସିଦ୍ଧ ଋଷି ବୃକ୍ଷ ମୂଳେ ବସି ବସି
ଗୋପନେ ରଖିଛ ସେହି ସତ୍ୟବାଣୀକୁ ।
ରୂପକୁ ନାହିଁ ଉପମା ଗୁହାଁଣି ଠାଣି ଗାରିମା
ହେବେ କି ବଳିଆ ସେହି ଯାଏ ମନକୁ,

ହେ ମାୟା ରୂଷି ଅନନ୍ତ        ଶରଣ ଦିଅ କାନ୍ତ
ବାହୁ ଯୁଗ୍ମ ତଳେ ରଖ ପୌର୍ଣ୍ଣମାସୀକୁ ।



ମନ ଭାବ ଏହାଙ୍କୁ
ମାଖନ ଚଖା ଏ ବଳରାମଙ୍କୁ

ବଇକୁଣ୍ଠ ସ୍ଥଳୀ        ତେଜି ବନମାଳି
ଆସିଛ ମରତ ଧାମକୁ,
ଖଗାସନେ ବଜେ        କରିଛ ଏ ସ୍ଥାନେ
ହୃଦେ ବନ୍ଧ ଦୟା ଭାବକୁ ।୧।
ହୃଦେ ଝୁଲେ ମଣି        ଶିରେ ଖେଳେ ଫଣୀ,
କମଳା ସେବନ୍ତି ପାଦକୁ
କର୍ଣ୍ଣରେ କୁଣ୍ଡଳ        ଗଳେ ବନମାଳ
ଧରି ଶଙ୍ଖଚକ୍ର ଗଦାକୁ ।୨।
ପ୍ରଭୁ ନରହରି        ଦେବ ଦଇତାରି
ଉଦ୍ଧର ଏ ପାପିମାନଙ୍କୁ
କସ୍ତୁରୀ ଚନ୍ଦନ        ଦେବ ଅପଘନ
ଜଞ୍ଜାଳ ମୋ ପଦ୍ମ ପାଦକୁ ।୩।
ଦିଅ ଅନୁମତି        ପ୍ରଭୁ ଯଦୁପତି
ଧରି ପାପୀ ଉଧାରଣ ବାନାକୁ
ପୌର୍ଣ୍ଣମାସୀ ଅଳି        ତାର ବନମାଳି
କଳୁଷିତ କଳେବରକୁ ।୪।

***

ଘନ ଘନ କଳାକାହ୍ନୁ ଡାକୁଛୁ ମତେ
ଛନ ଛନ ମନେ ଶଙ୍କା ଉପୁଯେ ଚତ୍ତେ (ଘୋଷା)

ଚଣ୍ଡ ଗ୍ଭେର ସେ କହ୍ନାଇ ମାଇପି ମଗ୍ ଅଟଇ
କ୍ଷୀର ଖାଇ ପୂତନାକୁ ମାରିଲି ମୋତେ । ୧ ।

ନାଶବସ୍ତ୍ର ଗ୍ଭେରିକଲି ବୃକ୍ଷ ଡାଳରେ ବାନ୍ଧିଲି
କାଳଆ କାହ୍ନୁକୁ ସଙ୍କ ନାହିଁ ପରତେ । ୨ ।

ଶାଶୁ ନଣନ୍ଦରେ ଘର କରେ କେତେ ହରବର
ଭୂତ ହୋଇ ଘରେ ପଶି ଡରାଏ ଯେତେ । ୩ ।

କାମିନୀ କୂଳ ବଇରି ଘଟାଇଲି ନଟୁ ଗ୍ଭେରି
ଗୋପ ଦାଣ୍ଡେ ଗ୍ଭଲି ଗଲେ ଜଗୁଛୁ ପାଖେ । ୪ ।

ପୌର୍ଣ୍ଣମାସୀ ଦ୍ବନ୍ଦହାର ବଂଶୀକ ତାର ଜୁହାର
ଯେତେ ହଠ ହଠା କରେ କହିବ କେତେ । ୫ ।



# ଅନନ୍ତ କବଚ

ଜୟ ଜୟ ଅନନ୍ତାୟ
ଅନନ୍ତାୟ ନମ,
ସ୍ମରଣ ମାତ୍ରକେ ସିଦ୍ଧ
ହୁଏ ସର୍ବ କାମ ।
ଅନନ୍ତ ନାମକୁ ଯେହୁ
ସ୍ମରଣ କରିବ,
କାଳକ୍ରମେ ବଇକୁଣ୍ଠ
ପ୍ରାପତ ହୋଇବ ।
ବଳଦେବ ରୂପି ପ୍ରଭୁ
ଏ ଦେବ ଅନନ୍ତ,
ଶରଣ ତାରଣ ପ୍ରଭୁ
ରେବତୀଙ୍କ କାନ୍ତ ।
ଅର୍ଦ୍ଧମାତ୍ରା ଶକ୍ତି ଦେବ
ଏ ଅନନ୍ତ ବୀଜ
ଅଙ୍ଗ ରକ୍ଷକ ଅଟନ୍ତି
ବଳଆର ତେଜ ।
ଅଷ୍ଟାଦଶ ଶକ୍ତି ସଦା
ଶ୍ରୀ ଅଙ୍ଗେ ପ୍ରକାଶ
ଅକାଳର ମୃତ୍ୟୁଭବ
ଭୟକରେ ନାଶ ।

ଅପମୃତ୍ୟୁ ଜନ୍ତୁଙ୍କର
ଦନ୍ତର ଯେ ଘାତ,
ନ ଲଗିବ ସର୍ବଦା ଯେ
ରଖିବେ ଅନନ୍ତ ।
ଶିର ମୋ ରଖିବ ପ୍ରଭୁ
ଦେବ ଶଙ୍କର୍ଷଣ,
କର୍ଣ୍ଣଁକୁ ରଖିବ ପ୍ରଭୁ
ରେବତୀ ରମଣ ।
ରଖନ୍ତୁ ତାଳାଙ୍କ ମୋର୍
ଲଲାଟ କପାଳ,
ଚକ୍ଷୁ ଦୁଇ ରଖନ୍ତୁ ମୋ
ଦେବ କାମପାଳ ।
ରଖନ୍ତୁ ନାସାକୁ ମୋର
ଦେବ ମୂଷଳନ୍,
ଅଧର ଜିଭ ରଖିବେ
ପ୍ରଭୁ ଯେ ହଳନ୍ ।
ଗଣ୍ଡସ୍ଥଳ ବଳଦେବ
ରକ୍ଷା କରୁଥିବେ,
ମୋହର କଣ୍ଠକୁ ସଦା
ରାମ ଯେ ରଖିବେ ।
ହୃଦୟକୁ ହଳାୟୁଧ
ରକ୍ଷା କରୁଥାନ୍ତୁ,
ବାହୁ ଦୁଇ ରୋହିଣେୟ
ସର୍ବଦା ରଖନ୍ତୁ ।

ଗର୍ଭ ସର୍ବ ସନ୍ଧ ରକ୍ଷା
ବଳଭଦ୍ର କର,
ନାଭିଚକ୍ର ପ୍ରଳମ୍ବଘ୍ନ
ସଦା ରକ୍ଷା କର ।
ଶୀର ପାଣି କଙ୍କାଳ ଯେ
କଟି କ ରଖିବେ,
କାଳନ୍ଧ ଭେଦନ ମୋର
ପିଠିକୁ ରଖିବେ ।
ଲିଙ୍ଗକୁ ରଖନ୍ତୁ ପ୍ରଭୁ
ଦେବ ନୀଳାମ୍ବର,
ଜଙ୍ଘ ଆଣ୍ଠୁ ପାଦ ନଖ
ବଳ ରକ୍ଷା କର ।
ଶୀରଠାରୁ ପାଦ ସର୍ବ
ଅଙ୍ଗ ସନ୍ଧ ମାନ
ଅଚ୍ୟୁତାଗ୍ରଜ ରଖନ୍ତୁ
ମୋର ନିବେଦନ ।
ଶୟନେ ସ୍ୱପନେ ପ୍ରଭୁ
କିବା ଜାଗରଣେ,
ଗ୍ଭଲନ୍ତେ ବସନ୍ତେ ପ୍ରଭୁ
କିବା ରଣେ ବଣେ ।
ଦୟାକର ଅନନ୍ତ ଯେ
ସଦା ରଖିଥିବ,
ଯୋଗିନୀ ଡାକିନୀ ପ୍ରେତ,
ଭୟେ ଯେ ନ ଥିବ ।

ପୂର୍ବ ପଶ୍ଚିମ ଉତ୍ତର
ଦକ୍ଷିଣ ଦିଗର,
ସ୍ଥିର ଦିଗେ ରଖିଥିବେ
ପ୍ରଭୁ ହଳଧର ।
ଦଣ୍ଡ ବା ମୁହୂର୍ତ୍ତ ଆଉ
ଦିବସ ସର୍ବସ୍ୱ,
ସର୍ବଦା ଯେ ରକ୍ଷାକର
ହେ ମୁଷଳଧାରି ।
ଚତୁର୍ବର୍ଗ ଦାତା ପ୍ରଭୁ
ଚିତ୍ତରେ ପ୍ରକାଶୁ,
ରୋହିଣୀ ସୁତ ମୂର୍ତ୍ତିର
ମନ ମଧ୍ୟେ ବସୁ ।



ସମସ୍ୟା ବିଭେଦ ବିଭାଜନ ହିଁ ବର୍ତ୍ତମାନର ପ୍ରଧାନ ସମସ୍ୟା । ସୁପ୍ତ ମାନବର ଜାଗରଣପାଇଁ ଅଭାବ ହିଁ ବିବେକ । ବୃକ୍ଷଭଳି ତ୍ୟାଗ, ପ୍ରସ୍ତର ଭଳି ଧୈର୍ଯ୍ୟ, ନଦୀ ଭଳି ମିଶ୍ରିତ, ସାଗର ଭଳି ଗମ୍ଭୀର ହେଲେ ସବୁ ଅନୁଭବ ଦୂରହେବ । ଜାଗତିକ ସେବା ଯେତେବେଳେ ବିପନ୍ନ, ହଜାରେ ଲକ୍ଷ୍ୟନେଇ ମତ ସୃଷ୍ଟି ହେଲେ ହେଁ ତାହାର ମୂଲ୍ୟ କିଛି ହୁଏନା । ଶାନ୍ତି, ମୈତ୍ରୀ ଓ ପ୍ରେମର ପ୍ରତୀକ ହୁଅ ।

# ପ୍ରେମସୁଧା

ଦେଖ ଚକାଡୋଳା ସିଂହାସନ ଗୁଣ୍ଡି,
ଆସି ବସିଲଣି ଚଉଦଙ୍ଗ ମାଡ଼ି ।
ଚଉଦଙ୍ଗେ ଗୃହେଁ ନୟନ ଚବଟି,
ଅଜଣା ଆଗନ୍ତେ ହୁଏ ଗୁଟିପିଟି ।
କିଏ ଅବା କଣ୍ଟ ନେଉଛ୍ଛି ଚୋରାଇ,
ଚୋର ଧରିବାକୁ ଆସିଛ୍ଛି ଗୋଡ଼ାଇ ।
ନଗରରେ ପଶି କରୁଛ୍ଛି ବଗ୍ଗୁର,
କେଉଁ ଉପାୟରେ ଧରିବ ସେ ଚୋର ।
ବସି ବସି ମାୟା ଫାନ୍ଦ ସେ ଫାନ୍ଦିଲା,
କୃତ୍ରିମରେ ମାୟା ଜାଲ ଘେରାଇଲା ।
ଗୁମ୍ଫା, ପର୍ବତ ଓ ତରୁଲତାମାନ,
ନବଡ଼େ ସେ ସବୁ କରିଲା ବନ୍ଧନ ।
ସେ ମାୟାଫାଶରୁ ଉଧୁରିବା ପାଇଁ,
କେଉଁଆଡ଼େ ଆଉ ପଥ ଦିଶୁନାହିଁ ।
ନଜେ ସେ ଦୁଆର ବସିଅଛ୍ଛି ଜଗି,
ଧରା ହେବେ ଚୋର ନଶ୍ଚେ ହେବେ ଦାଗୀ ।
ବାଉଁଶ ପାଞ୍ଚିଆ ରଖିଛ୍ଛି ଓଳାଇ,
ମୂଢ଼ ଜୀବ ଗଲେ ଦେବ ସେ ଗଳାଇ ।
କେମିତ୍ତ ସେ ମୂଢ଼ ଜାଣିବ ଶଙ୍କତ୍ତ,
ଯେ ମାୟାରେ ବ୍ରହ୍ମା ଶିବ ଧନ୍ଦ ହୋନ୍ତି ।

ଏକା ସେହି ଜାଣେ ମୋହିନୀ ମନ୍ତର,
ଦୟା କ୍ଷମା ଆଉ ଶାନ୍ତି ପ୍ରେମଧାର ।
କପଟ ସେ ମୂଢ଼େ ହୋଇବେ ଆୟୁତ,
ପାଶେ ଜଗିଛନ୍ତି ପରିଷଦ ଭୃତ୍ୟ ।
ଚଉଦିଗେ ପଠାଇଲ ସେ ସାରଥି,
ମାଡ଼ି ଆସିଲେଣି ମହା ମହାରଥୀ ।
ବସିବ ସୁଧର୍ମା ସଭାରେ ବଗୁର,
କପଟ ହୋଇବେ ଭବସିନ୍ଧୁ ପାର ।
ଗୋଟି ଗୋଟି ମହାରଥୀ ଦେବଦୂତ,
ପରୀକ୍ଷିତ ହେବେ ଶୁଣି ତା କୃତିତ୍ୱ ।
ସୁନା ପିତ୍ତଳ ଯେ ଏକ ସମ ଦିଶେ,
କଷଟି ପଥରେ କଷିଲେ ନ ମିଶେ ।
ଗୁରିଆଡ଼େ ପଡ଼ିଗଲାଣି ଚହଳ,
ଗେୁର ଧରିବାକୁ ହେଲେଣି ବାହାର ।
ପୁର ପଲ୍ଲୀ ନଗ୍ର ହୁଏ ଥରହର,
ଦେଖି ମୂଢ଼ ଜନେ ହେଲେଣି କାତର ।
ବାଜ ଉଠିଲାଣି ଭେରି ତୁରୀ ଶଙ୍ଖ,
ଶୁଭିଲାଣି ଦାଣ୍ଡେ ନିଶାଣ ଢମକ ।
କରତାଳ ଆଉ ହରିବୋଲ ନାଦ,
କାନକୁ ସେ କରିଦେଲାଣି ସ୍ତବଧ ।
ହୁଳହୁଳି ଦ୍ୟନ୍ତି ସିମନ୍ତିନୀ ମିଳି,
ବାଟ ଦାଣ୍ଡ ଆଜ ଲଟିଛି ଗହଳି ।
ଦେଖଣା ହାରିଏ ଦେଖି ଆକବାକ,
ପଚାରନ୍ତି ରହି ଏକକୁ ଆରେକ ।

ମଠବାଡ଼ି ଆଜ ସାଧୁ ମହାରାଜ,
କମ୍ପିଲଣି ସାଧୁ ପୀଠେ ମହା ତେଜ ।
ଇସ୍କୁଲ, କଲେଜ, ଅଫିସ, କଚେରୀ,
ସେ ବ୍ରହ୍ମ ତେଜରେ ଗଲଣି ତ ପୁରି ।
ସେ ମାୟା ଜାଲରେ ସର୍ବେ ହେଲେ ବନ୍ଧା,
ଛାଡ଼ି ଆସିଲେଣି ନିଜ ନିଜ ଧନ୍ଦା ।
ଦେଖି ପ୍ରଭୁଙ୍କର ସେ ମହା ମୂରତି,
ଭୟେ କମ୍ପିଲେଣି ମୂଢ଼, ଭଣ୍ଡ ଯତି ।
ଅଜ୍ଞାନୀଙ୍କ ସେ ଯେ ଯମ ପରି ଦିଶେ,
ଜ୍ଞାନୀ ହୃଦେ ବିଷ୍ଣୁ ପ୍ରତିମା ପ୍ରକାଶେ ।
ଆସିଛନ୍ତି ପ୍ରଭୁ ଗୁରୁ ରୂପ ଧରି,
ଶ୍ରୀମୁଖୁ ଝରୁଛି କରୁଣାର ବାରି ।
ହରିନାମେ ଏବେ କମ୍ପଇ ଧରଣୀ,
ନିଜ ନିଜ ଧର୍ମେ ସର୍ବେ ହୁଅ ବ୍ରୁଣି ।
ଜଳଦ ଗମ୍ଭୀର ରୂପ କାନ୍ତି ଦେଖି,
ସରବେ ଗୃହିଣ ଦେଖନ୍ତି ନଚରେଷି ।
ନାମ ପ୍ରେମ ରଜ୍ଜୁ ଧରିଛି ହାତରେ,
ଗୋଡ଼ାଇ ଖୋଜୁଛି ମନ୍ଦରେ କନ୍ଦରେ ।
ହରିନାମ ସୂତ୍ରେ ବାନ୍ଧିବାର ପାଇଁ,
ବ୍ୟାକୁଳ ପରାଣେ ଆକୁଳ ହୁଅଇ ।
କଳସୀରେ ଜଳ ପୂର୍ଣ୍ଣ ହୋଇଥାଏ,
ପିଇଲେ କଳସୀ ଖାଲି ହୋଇଯାଏ ।
ତା ବ୍ରହ୍ମ କଳସୀ ଗୀତା ପ୍ରେମ ନୀର,
ଯେତେ ପିଉଥିଲେ ଫିଟୁଥାଏ ଝର ।

ତା ଶ୍ରୀମୁଖଁ ଯେଉଁ ପ୍ରେମ ସୁଧାଜଳ,
ପିଇବା ପାଇଁକ "ପୂର୍ଣ୍ଣୀ" ଯେ ପାଗଳ ।
ଆକାଶେ ଶୁଭିବ ଦୁନ୍ଦୁଭିର ବାଦ୍ୟ,
ପ୍ରଭୁ ଲୀଳା ଦେଖି ଦେବତା ଆନନ୍ଦ ।
ଦେବ ସ୍ତ୍ରୀ ସିଏ ମିଳି ଦେବେ ହୁଳହୁଳି,
ପାରିଜାତ ପୁଷ୍ପ ପଡ଼ିବ ବହୁଳି ।
ଦେଖ ବସୁନ୍ଧରା ନାଚେ ଆନନ୍ଦରେ,
ଆକାଶ କମ୍ପଇ ହରିନାମ ସ୍ୱରେ ।
ଧରି ନାମ ଗୀତା ସୁଦର୍ଶନ ବାଡ଼ି,
ଦୁର୍ଜ୍ଜନ ଦୁଷ୍କୃତ ଦେଉଛୁ ଘଉଡ଼ି ।
ମୂଢ଼ ଦୁରୁଜନେ କରିବେ କି ଦଙ୍ଗା,
ଚୌଦିଗେ ଜଗିଛି ସୁଦର୍ଶନ ଠେଙ୍ଗା ।
ଛାରଖାର ଏବେ ହେଲାଣି ଧରଣୀ,
ପାପାରୂଢ଼ ଯେତେ ଯୁବକ ତରୁଣୀ ।
ତରିଯିବୁ ଯେବେ ଭବସିନ୍ଧୁ ଜଳ,
ହରି ନାମେ ମଜି ଅଜାମିଳ ପାଗଳ ।
ପୁରାଣେ ଶୁଣିଛୁ ଦସ୍ୟୁ ରତ୍ନାକର,
ଭଜି ରାମ ନାମ ଭବସିନ୍ଧୁ ପାର ।
ଏ ଭବ ସଂସାର ନୁହଁ ବାବୁ ଘର,
ଦିନେ ତାର କୋଳୁ ହେବୁ ତୁ ଅନ୍ତର ।
କେତେ କେତେ ମହାଯତି ଗଜପତି,
କାଳ କବଳରୁ ବରତି ନାହାନ୍ତି ।
ଏକା ହରିନାମ ଭବ ଜଳେ ଭେଳା,
ଜପି ତାଙ୍କ ନାମ ହୃଦେ ତୋର ଖେଳା ।

ଗୁରୁ କୃପା ଯେବେ ଲଭି ତୁ ପାରିବୁ,
ଯମ କାଳ ଫାଶୁ ଦୂରେଇ ତୁ ଯିବୁ ।
ଗୁରୁ ମନ୍ତ୍ର କେବେ ନୁହଁରେ ଦୁର୍ବଳ,
ନ ମଣିବୁ ତାଙ୍କୁ ପିଲା ଖେଳଘର ।
ଶୁଣିଛୁ ପୂରୁବେ ଏକଲବ୍ୟ କଥା,
ଗୁରୁ ଭକ୍ତି ବଳେ ହେଲା ଜଗତଜିତା ।
ଗୁରୁ ଯେ ଅଟନ୍ତି ସ୍ୱୟଂ ପରଂବ୍ରହ୍ମ,
ଗୁରୁ ରୂପେ ଆସିଛନ୍ତି ଧରାଧାମ ।
ପ୍ରଭୁ ତୁମ୍ଭ ଲୀଳା ହେଉଛି ମୁଁ ଶୁଣି,
ଦେଖିବାକୁ ଦିବ୍ୟ ଚକ୍ଷୁ ଦିଅ ଆଣି ।
ନାମ କୀର୍ତ୍ତନରେ ସେ ଶୋଭା ମଞ୍ଜୁଳ,
ଦେଖିବାକୁ "ପୂର୍ଣ୍ଣମାସୀ" ଯେ ପାଗଳ ।
"ପୂର୍ଣ୍ଣମାସୀ" କହେ ସେ ଶୋଭା ଦର୍ଶନ,
ପବିତ୍ର କରିବ ମୋ ବେନି ନୟନ ।

—※—

ନର ରୂପୀ ନାରାୟଣ
ଉତ୍ଥାନ ପତନ ତୁମ୍ଭର ଗୁଣ
ହେ ମହାପ୍ରଭୁ
ସବୁତ ତୁମ୍ଭ ଭିଆଣ । ୧ ।
ବ୍ରହ୍ମା ବରେ ବଳଆନ
ମାତି ନିଶାଚରେ କଲେ ଉଛନ୍ନ
ହେ ମହାପ୍ରଭୁ
ଧରା କଲେ ଛିନ୍ନ ଭିନ୍ନ । ୨ ।

ଧର୍ମ ସଂସ୍ଥାପନା ପାଇଁ
ଯୁଗେ ଯୁଗେ ଆସୁଅଛ ଗୋସାଇଁ
ହେ ମହାପ୍ରଭୁ
ଅସୁର ନାଶ ଗୋଡ଼ାଇ । ୩ ।
ମାୟାଧର ହେ ଠାକୁର
ମାୟା ନ ଜାଣନ୍ତି ବ୍ରହ୍ମା ଶଙ୍କର
ହେ ମହାପ୍ରଭୁ
କାହୁଁ ଜାଣିବ ମୁଁ ସ୍ଥୁର । ୪ ।
ଶ୍ରଦ୍ଧାରେ ମାମୁଁ ଡାକଲେ
ଅକ୍ରୂର ପଠାଇ ଡକାଇ ନେଲେ
ହେ ମହାପ୍ରଭୁ
ମାଇଁ ଯେ ବିଧବା ହେଲେ । ୫ ।
ଏହ୍ୱାପର ତୁମ୍ଭ କୀର୍ତ୍ତି
କଳରେ ଆସିଛ କଲ୍କି ମୂର୍ତ୍ତି
ହେ ମହାପ୍ରଭୁ
ଦୁଃଖ ଯାଉ ଏ ଧରଣୀ । ୬ ।
ପୂର୍ଣ୍ଣମାସୀ କର ଯୋଡ଼ି
ଗୁହାରି କରୁଛି ଶ୍ରୀପାଦେ ପଡ଼ି
ହେ ମହାପ୍ରଭୁ
ଖୋଲିବ କରୁଣା ପେଡ଼ି । ୭ ।

***

# ଗୁରୁ ବନ୍ଦନା

( ଏକ )

ଜୟ ଗୁରୁଦେବ ଅନନ୍ତ ଠାକୁର
ଜୟ ବଳରାମ ନାମଧାରୀ,
ମଥା ପରେ ଜଟା କାନ୍ଧରେ ପଇତା
ଅଙ୍ଗେ ତୁଳସୀର ମାଳ ପୂରି । ୧ ।
ମୁଣ୍ଡେ ଶିଖିଚୂଳ ମାଳତୀ ବକୁଳ
ଫୁଲମାଳ ଧରି ଗଳେ ଶୋଭା,
କଉସ୍ତୁଭ ମଣି ଲମ୍ବେ ହୃଦେ ପୁଣି
ଦେଖି ଭକ୍ତଙ୍କର ମନ ଲୋଭା । ୨ ।
ସପ୍ତଫଣୀ ନାଗ ମସ୍ତକ ମଣ୍ଡିଛୁ
ଶୋଭାକୁ ତ ନାହିଁ ପଟ୍ଟାନ୍ତର,
ସୁଢ଼ଳ ମୂରତି କମନୀୟ କାନ୍ତି
ବଳରାମ ନାମେ ଶକ୍ତିଧର । ୩ ।
ଯଶୋଦାଙ୍କ ବାଳ ହୋଇ ଆଦିମୂଳ
ଦ୍ଵାପରେ କରିଲ କେତେ ଖେଳ,
କଂସ କେଶୀ ମାରି ଯାମଳା ବଧିଲ
ବକାକୁ କରିଲ ଦୁଇଫାଳ । ୪ ।
ରଜକ ମାରିଲ କୁବୁଜା ତାରିଲ
ଅସୁନ୍ଦର ରୂପ ଗଲା ତାର,

ଶିବ ଧନୁ ଭଙ୍ଗି                    କୁବଳୟା ବଧି
ଗର୍ବ ନାଶିଲ କଂସାସୁର । ୫ ।
ମୟୂର ଚନ୍ଦ୍ରିକା                    ମଥାପରେ ଖଞ୍ଜି
କଟିରେ କଙ୍କିଣୀ ରଖି
ଗୋପବାଳ ସଙ୍ଗେ                    ଧୂଳିଘର ଖେଳ
ନନ୍ଦକୁ ଦେଇଛ ବଡ଼ପଣ । ୬ ।
ଯୁଗେ ଯୁଗେ ସ୍ୱାମୀ                    ଏ ଭାରତ ଭୂମି
ତୁମ୍ଭ ଖେଳ ପାଇଁ ବସାଘର,
ଶେଷ କର ଖେଳ                    ବଇକୁଣ୍ଠେ ଚଳ
ଅନନ୍ତ ଶୟନେ ନିଦ୍ରା ଘୋର । ୭ ।
ଜାଣିପାର ଦେବ                    କଳି ଶେଷ ହେବ
ଜନମିଲ ଆସି ମର୍ତ୍ତ୍ୟପୁର,
ଦେବସଭା ପରେ                    ନିଷ୍ପତ୍ତି ନେଇଛ
କଳଙ୍କି ଉଡ଼ିବ କେତେଦୂର । ୮ ।
ବାଲୁକା ମଧ୍ୟରେ                    କି ଖେଳ ଖେଳୁଛ
ଜାଣିବାକୁ ଶକ୍ତି ନାହିଁ ମୋର,
ଅନ୍ଧ ପରି ମୁଁ ଯେ                    ଦର୍ଶନ୍ତି ବୁଲୁଛି
ନ ଦେଖୁଛି ନିଜ ରୂପ ତୋର । ୯ ।
ଭକ୍ତଙ୍କ ନିମନ୍ତେ                    ଜନମ ହୋଇଛ
କପଟେ କମ୍ପାଇ ମହାବାହୁ,
ଭବ ବନୋହଆ                    ହରି ବୋଲଉଛ
ଭକତ ବତ୍ସଳ ନାମ ବହୁ । ୧୦ ।
କାହିଁ ବଳରାମ                    କାହିଁ ପର୍ଶୁରାମ
କାହିଁ ହୁଅ ଗଉର ନତାଇ,

ମଦନ ମୋହନ ନଟବର ବେଶ
କୃଷ୍ଣ ମୂରତି ହୁଅ ଗୋସାଇଁ । ୧୧ ।
ଗୁରୁ ବଳରାମ ଶୁଣ ମୋ ଗୁହାରି
କପଟ ନ କରି କର୍ଣ୍ଣ ଡେରି,
ଜାଣେନାହିଁ ପାଠ ଜନମ ମୂରୁଖ
ଦୋଷ ନ ଧରିବ ଦଇତାରି । ୧୨ ।
ଅଜାମିଳ ପାପୀ ତୁମ୍ଭ ନାମ ଜପି
ହୋଇ ଯାଇଥିଲା ପାପୁ ପାରି,
କରିଛି ମୁଁ ଆଶା ଗୁରୁ ପାଦ ଧରି
ତରିବାକୁ ଏହି ଭବବାରି । ୧୩ ।
ପୌର୍ଣ୍ଣମାସୀ ଦାସୀ ଚରଣ ସେବାରେ
ରଖିଥିବ ସଦା ଅହିବର,
ଶିଶୁ ଅନନ୍ତଙ୍କ ନାମ ମାଧୁରୀକୁ
ଭଜନ କରିବ ନିରନ୍ତର । ୧୪ ।

***

(ଦୁଇ)

ଅନନ୍ତ ସଂସାର ତୋର ବଡ଼ ବିଚିତ୍ର,
ଅନନ୍ତ ସଂସାରେ ଶୁଭେ ଜନ ହାହାକାର । ୧ ।
ଜଣା କି ହେଲା ଭଣ୍ଡାରୁ ଦୟାର ସାଗର
ସପ୍ତଶଯ୍ୟା ପରେ କିବା ଶୋଇଲ ଠାକୁର । ୨ ।
ଉଡ଼ିଗଲା ଯଦି ତବ ପତିତପାବନ,
କହିଦିଅ ଖୋଲି ମନେ ହେବ ନାହିଁ କ୍ଷୁନ୍ନ । ୩ ।

ଭକ୍ତ ଉଦ୍ଧାରଣ ପାଇଁ ଅଛଲେ ଗ୍ରାମର,
ଜନ୍ମ ହୋଇଅଛ ପ୍ରଭୁ ସ୍ୱର୍ଣ୍ଣକ୍ଷେତ୍ର ପର । ୪ ।
ଦିଅ ଶକ୍ତି ଦିଅ ମୁକ୍ତି ପ୍ରଭୁ ଦୟାଶୀଳ,
ଛୁଟିଯାଉ ମନୁ ମୋର ବିଷୟ ଜଞ୍ଜାଳ । ୫ ।
ଦେଶ, ବିଶ୍ୱ, ଭକ୍ତ, ଶିଷ୍ୟ କରି ତୁମ ଆଶ,
ପୌର୍ଣ୍ଣମାସୀ ମସ୍ତକରେ କର କୃପା ବାସ । ୬ ।

(ଚାର)

ଅନନ୍ତ ଅନନ୍ତ ଅନନ୍ତ ମୂରତି
ଅନ୍ତର ଖୋଜେ ନିରତେ
କେଉଁ ଗଗନରେ ଅଜଣା ଦେଶରେ
ଅଛ କି ପ୍ରଭୁ ଜଗତେ । ୧ ।
ତୁଭୁ ମୁଁ ଆକୁଳେ ଡାକୁଛି ବିକଳେ
କାନେ ନ ବାଜୁଛି ଡାକ
ହେ ଅନନ୍ତ ଦେବ ନିଷ୍ଠୁର ନ ହେବ
ତୁମ୍ଭେ ମୋ ହୃଦ ଆଲୋକ । ୨ ।
ଅନନ୍ତ ମୂରତି ଦେବ ଶିରପତି
ଅନ୍ତର ଦୁଃଖ ନ ଜାଣୁ
ଅତି ଦୁଃଖେ ପଡ଼ି ଡାକେ କର ଯୋଡ଼ି
ନିଷ୍ଠୁର ହେଲ ପାଷାଣୁ । ୩ ।
ଆର୍ତ୍ତିର ଆରତ ଫେଡ଼ ହେ ଅନନ୍ତ
କଳି କ୍ରୂର କବଳୁ
ଦୁଃଖୀ ଦୁଃଖ ହର ଅନନ୍ତ ସଂସାର
ପାପ ବଢ଼େ ବେଳୁ ବେଳୁ । ୪ ।

କିପରି ମୁଁ ପାର ହେବି ଏ ସଂସାର
ପାପମୟ ଜଗତରୁ
ହେଲେ ତୋ କରୁଣା ନୋହିବି ବାଠବଣା
ଅବା ତରିବି ସଂସାରୁ । ୫ ।

ତୁମ୍ଭବିନୁ କେହି ରକ୍ଷାକର୍ତ୍ତା ନାହିଁ
ଶୁଣିବାକୁ ପୌଣ୍ଡିଅଳ
ରଖ ରଖ ଗୁରୁ ଶିଶୁ ଅନନ୍ତ ହେ
ଚରଣେ ଶରଣ ଗଲି । ୬ ।



* ମୃତ୍ୟୁପାଇଁ ସବୁବେଳେ ପ୍ରସ୍ତୁତ ଥାଅ । କାଳ ଗର୍ଭରେ ସମସ୍ତେ ଯିବେ, କିନ୍ତୁ ଶେଷରେ ଲକ୍ଷ୍ୟଚ୍ୟୁତ ହୁଅନା ।

* ସତ୍‌ସଙ୍ଗରେ ବସିବାପରେ ଭୁଲ ଏବଂ ଠିକ୍ ତୁମକୁ ସ୍ଥିର କରିବାକୁ ହେବ । ଜାଣି ଶୁଣି ଯଦି ଭୁଲକର ତାହାହେଲେ ଜନ୍ମ ଜନ୍ମାନ୍ତରର ସ୍ୱୀକୃତିକୁ ନଷ୍ଟକରି ପତିତ ହେବ ।

# ଶ୍ରୀ ଶ୍ରୀ ଶିଶୁ ଅନନ୍ତ
# ଜନ୍ମ ଉତ୍ସବ

(ଏକ)

ଜୟ ଜୟ ବଳରାମ ହେ
ଜୟ ଅନନ୍ତ ଦେବ ।
କଳି ଯୁଗେ ଲୀଳା କରୁଛ
ଅଗୋଚର ମାନବ ॥
ବୋଲଅ କଳ୍କ କଳରେ
ମୁଁ ଯେ ଅଧମ ଛାର ।
ଜାଣିବାର ଶକ୍ତି ପ୍ରଭୁ ହେ
ଦେଇନାହଁ ମୋଠାର ॥
ଶୁଣିଛୁ ଭୁବନେଶ୍ୱରରେ
ଖଣ୍ଡଗିରି କାନନ ।
ଅତି ସୁଶୋଭିତ ପର୍ବତ
ତହିଁ ଯେ ତପୋବନ ॥
ତରୁ ଲତା ଫଳ ପୁଷ୍ପରେ
ବନ କ ଶୋଭାବନ ।
ପ୍ରତିଧ୍ୱନି ଗିରି ଗୁହାରେ
ବନ ପକ୍ଷୀ କୂଜନ ॥
ବହେ ସୁଶୀତଳ ପବନ
ସୂର୍ଯ୍ୟ ତାପ ନ ଥାଇ ।

ଜନ ମନ ବିମୋହନ ସେ
 କ୍ଷୁଧା ତୃଷା ହରଇ ॥
ହର ଗୌରୀ କ୍ରୀଡ଼ାସ୍ଥଳୀ ସେ
 ନିତ୍ୟ ଭ୍ରମନ୍ତି ଆସି ।
ଅତି ପୁଣ୍ୟ ଭୂମି ସେ ବନ
 ଯହିଁ ଦେବେ ନିବାସୀ ॥
ଯୁଗ ଯୁଗ ଧରି ଯୋଗୀଏ
 ଭଜି ଅନନ୍ତ ନାମ ।
ମୋହ ମାୟା ମୟ ସଂସାରେ
 ଯହିଁ ସାଧନେ କ୍ଷମ ॥
ଅହରହ ନାମ ଭଜନ
 ତେଜି ନିଦ୍ରା ଆହାରେ ।
ନାମାମୃତ ପାନ କରନ୍ତି
 ନ ପଡ଼ନ୍ତି ଭ୍ରମରେ ॥
କଳିର କରାଳ ମୂରତି
 ତାଙ୍କୁ ନ ପାରେ ଛୁଇଁ ।
ବ୍ରହ୍ମଦର୍ଶୀ ଯେଉଁ ଶରୀର
 ତାର ଭୟ ନ ଥାଇ ॥
ପ୍ରଭୁ ଦରଶନ ବାସନା
 ଜାଗି ହୃଦ ମଧ୍ୟରେ ।
ମର ଦେହ ତ୍ୟାଗ କରିଣ
 ରହିଛନ୍ତି ଗୁପ୍ତରେ ॥
ନରମାଛି ହୋଇ ବୁଲନ୍ତି
 ସନ୍ଥ କଷଣମାନ ।

ଅପେକ୍ଷା କରଣ କୃପାକୁ
ତାଙ୍କ ବ୍ୟାକୁଳ ମନ ॥
ଭକ୍ତର କରୁଣ ଡାକରେ
ନାରାୟଣ ଟଳିଲ ।
ଭକ୍ତ ବନ୍ଧୁ ଭାବଗ୍ରାହୀ ସେ
ଭାବେ ଭୋଳ ହୋଇଲ ॥
ଭାବ ବିନୋଦିଆ ଠାକୁର
ଶିଶୁ ଅନନ୍ତ ହରି ।
ଭକ୍ତ ବଶ ହୋଇ ବିଜୟ
କଲ ଏ ଖଣ୍ଡଗିରି ॥
ଘର ଗ୍ରାମ ମଠ ଗୁମ୍ଫଡ଼ଣ
ବଣେ ବଣେ ବୁଲୁଛ ।
ମାୟା ଜାଲ ଏଠି ବିସ୍ତୁଇ
ଭକ୍ତ ମେଳା କରୁଛ
ଜନ୍ମ ମହୋତ୍ସବ ହେଉଛି
ବୋଲି କର୍ଣ୍ଣେ ଶୁଣୁଛି ।
ତୋହ ଦରଶନେ ଚକ୍ଷୁରେ
ମାୟା ଜାଲ ଘେରୁଛି ॥
ଜ୍ଞାନ ନେତ୍ରେ ଭକ୍ତେ ଦେଖନ୍ତି
ନାରାୟଣ ମୂରତି ।
ଦରଶନ ଦେଇ ବଳିଆ
ତାଙ୍କୁ କରେ ମୁକତି ॥
ଜଗତ ଜନନୀ ମାତା ସେ
ବସିଛନ୍ତି ଏଠାରେ ।

ବଳଆ ଯେ ଭକ୍ତ ବାଛନ୍ତ
ଦେଖେ ସାକ୍ଷୀ ରୂପରେ ॥
ଘିବ ବନୋଦଆ ବଳଆ
ତୁମ୍ଭେ ଭକତ ବନ୍ଧୁ ।
ଭକ୍ତ ପାଶେ ବନ୍ଧା ହୋଇଛ
ନାମ ତୋ କୃପାସିନ୍ଧୁ ॥
ମାୟାଧର ମାୟା ରଚିଲ
ଭକ୍ତଉଦ୍ଧାର ପାଇଁ ।
ଧରାଧାମେ ବଜେ କରିଲ
ପ୍ରଭୁ ଜଗତ ସାଇଁ ॥
ନାରାୟଣ ନର ରୂପରେ
ଖେଳ ମାନବ ମେଳେ ।
ଅନନ୍ତର ଅନ୍ତ ମାନବ
କାହୁଁ ଜାଣିଲ ହେଲେ ॥
ଶୁଣିଛୁ ପୁରାଣେ ଏ କଥା
କଣ୍ଠୁ ମୁଁ ଜାଣେ ନାହିଁ ।
ପୁରାଣ କଥାକୁ ଏଡ଼ିବା
ମୋର ଶକ୍ତ ବା କାହିଁ ॥
ବାଳୁତ କାଳରୁ ପିନ୍ଧୁଛ
ଶିରେ ତିଳକ ଟୋପି ।
କହ୍ନା ଅବତାରେ ପ୍ରଭୁ ହେ
ମୋହିଥିଲଟି ଗୋପୀ ॥
କୃଷ୍ଣ ହୋଇ ଗୋପୀମାନଙ୍କୁ
ଘରେ ଠାବ ନ ଦେଲ ।

ମୋହନ ମୁରଲୀ ବଜାଇ
ବୃନ୍ଦାବନେ ରମିଲ ॥
ଛାଡିଥିଲ ଗୋପୀମାନଙ୍କୁ
ଛାଡି ସେ ବୃନ୍ଦାବନ ।
ଯମୁନା ସହିତ କରିଛ
ପ୍ରଭୁ ସେ ତୀର୍ଥ ସ୍ଥାନ ॥
କଳରେ ଭକତ ତାରିବ
ଖଣ୍ଡଗିରି ବନରେ ।
ମୋହନ ମୁରଲୀ ପ୍ରଭୁ ହେ
କାହିଁ ତୁମ୍ଭ କରରେ ॥
ପୂର୍ଣ୍ଣିମାସୀ ଆଶା କରିଛି
ଗୁରୁ ଚରଣ ତଳେ ।
ଉଦ୍ଧାର କରିବ ବୋଲିଆ
ତୁମ୍ଭ ଭକତ ମେଳେ ॥

—*—

(ଦୁଇ)

ଗୁରୁଦେବଙ୍କର ଆଜ ଜନମଦିନ
ଉଲ୍ଲାସେ ନାଚୁଛି ଦେଖ ଏ ତପୋବନ

ବୁଲି ବୁଲି ବନେ ବନ ପୁଷ୍ପ କରିବ ଚୟନ
କେତକୀ ସେବତୀ ଆଉ ମଲ୍ଲୀ କାଞ୍ଚନ ।୧।

ମଥାରେ ବାନ୍ଧିବ ଚୂଳ କେତକୀ ପାଖୁଡ଼ା ମାଳ
ଶିଖୀପୁଚ୍ଛ ବାନ୍ଧିବ ଟୋ କରି ଯତନ ।୨।

ଆଣି ଅଗୁରୁ ଚନ୍ଦନ  ଲେପିବ ଗୋ ଅପଘନ
ସୁବାସ କୁଙ୍କୁମ ଦେବ ଝୋପି ଚନ୍ଦନ ।୩।
ବସନ ଭୂଷଣ ମାଳା  ପିନ୍ଧାଇ ଗୁରୁଙ୍କ ଗଳା
ଚରଣ ବନ୍ଦୀ କରିବ ନାମ ଭଜନ ।୪।
ପ୍ରେମେ ଧରି ଅର୍ଘ୍ୟଥାଳି  ପୂଜ ଗୁରୁ ବନମାଳି
ପୂର୍ଣ୍ଣିମାସୀ ଶିର ଲେଟୁ ଗୁରୁ ଚରଣ ।୫।



(ଭଜନ)

ନଳାମ୍ବର ଲୀଳାକର  ନଳାଞ୍ଚଳେ ଥାଇକ,
ନଳାଞ୍ଚଳେ ବହୁରୁଛ  ସଙ୍ଗେ ଧେନୁ ଘଇକ ।
ଡାକେ ମୁଁ ବଳଆ ଜଗା  ପାଦପଦ୍ମ ଧ୍ୟାଇକ,
ବାଦ୍ୟ କୋଳାହଳ ସ୍ୱନେ  ଡାକ ଶୁଭେ ନାହିଁକ ।୧।
କରୁଣା ନ ହେବ ଯେବେ  ତୁମ୍ଭ ନାମ ଡାକକ,
ଭବ ପାରିବାରୁ ପାରି  କରିବ କେ କାହିଁକ ।୨।
ବଳଆର ବାହୁତଳୁ  ଘସିଗଲେ ମୁହିଁକ,
ଅପକାର୍ତ୍ତି ବାନା ପ୍ରଭୁ  ଉଡ଼ାଇବ ମସ୍ତକ ।୩।
ଅଜାମିଳ ମହାପାପି  ଡାକ ତୁମ୍ଭ ନାମ କ,
ଉଦ୍ଧାରିଲ ମୋ ବେଳକୁ  କର୍ଣ୍ଣେ ହାତ ଦେଲକ ।୪।
ଆରତ ଭଞ୍ଜନ ପ୍ରଭୁ  ଗଞ୍ଜ ଦୁଃଖ ଦେଇକ,
ପୂର୍ଣ୍ଣିମାସୀ ଆଶା ତବ  ପାଦ ପଦ୍ମ ପାଇଁକ ।୫।

—o—

## (ଗୀତ)

(ନଳଚନ୍ଦ୍ର ହୋ ଦେଖ ଉଡ଼ୁଛି ବାନା)

ପ୍ରିୟ ସହିଗୋ ଦେଖି ଚନ୍ଦ୍ରକୁ ହେଜ।

ଏ କେଉଁ ଦେବତା ପାଉଛି ପୂଜା (ଘୋଷା)

ହୋଇ ଲଣ୍ଡଭଣ୍ଡ      ଗୁଡ଼ ଗୋପଦାଣ୍ଡ
    ତପୋଧନେ ଆସି କରୁଛନ୍ତି ମଜା।
ଯେନ ଗୋପବାଳ      କରୁଛନ୍ତି କ ଖେଳ
    ତପେ ବୃନ୍ଦାବନ ହୋଇଛି ସଜା ।୧।
ଯେନ ଦୁଗ୍ଧ କ୍ଷୀର      ଲବଣୀ ସାକର
    ପହଞ୍ଚି ଗଲେଣି ଆସି ପରଜା।
ସ୍ୱର୍ଗେ ଦେବେ ଖୁସି      ପହଞ୍ଚିଲେ ଆସି
    ସଙ୍ଗେ ଆଣିଛନ୍ତି ଦୁନ୍ଦୁଭି ବାଜା ।୨।
କରି ବନଭୋଜ      ପରଶି ଦେଉଛି
    ଯେତେ ଯିଏ ଖାଉ ହେଉଛି ଖଞ୍ଜା।
ହୋଇ ଦେବସଭା      ଦଶେ କେଡ଼େ ଶୋଭା
    ଉଡ଼ୁଛି ପାତକ ନାଶନ ଧ୍ୱଜା ।୩।
ପାଦ ତଳେ ବସି      ଭଜନକୁ ଘୋଷି
    କରୁଥିବା ତାଙ୍କ ଚରଣ ପୂଜା
ନ ହୋଇ ଅଧିର      ମାଗିନେବା ବର
    କହେ ପୂର୍ଣ୍ଣୀ କାହ୍ନୁ ନ କରୁ ତେଜ୍ୟା ।୪।

—❋—

ଆଣି ଅଗୁରୁ ଚନ୍ଦନ ଲେପିବ ଗୋ ଅପଘନ
ସୁବାସ କୁଙ୍କୁମ ଦେବ ଛୋପି ଚନ୍ଦନ ।୩।
ବସନ ଭୂଷଣ ମାଳା ପିନ୍ଧାଇ ଗୁରୁଙ୍କ ଗଳା
ଚରଣ ବନ୍ଦୀ କରିବ ନାମ ଭଜନ ।୪।
ପ୍ରେମେ ଧରି ଅର୍ଘ୍ୟଥାଳି ପୂଜ ଗୁରୁ ବନମାଳି
ପୂର୍ଣ୍ଣିମାସୀ ଶିର ଲୋଟୁ ଗୁରୁ ଚରଣ ।୫।



## (ଭଜନ)

ନଳାମ୍ବର ଲୀଳାକର ନଳାଞ୍ଚଳେ ଥାଇକ,
ନଳାଞ୍ଚଳେ ବନ୍ଧରୁଛ ସଙ୍ଗେ ଦୋନ ଭାଇକ ।
ଡାକେ ମୁଁ ବଳିଆ ଜଗା ପାଦପଦ୍ମ ଧ୍ୟାଇକ,
ବାଦ୍ୟ କୋଳାହଳ ଶୁଣେ ଡାକ ଶୁଭେ ନାହିଁକ ।୧।
କରୁଣା ନ ହେବ ଯେବେ ତୁମ୍ଭ ନାମ ଡାକକ,
ଭବ ପାରାବାରୁ ପାର କରିବ କେ କାହିଁକ ।୨।
ବଳିଆର ବାହୁତଳୁ ଖସିଗଲେ ମୁହିଁକ,
ଅପକାର୍ତ୍ତି ବାନା ପ୍ରଭୁ ଉଡ଼ାଇବ ମସ୍ତକ ।୩।
ଅଜାମିଳ ମହାପାପି ଡାକ ତୁମ୍ଭ ନାମ କ,
ଉଦ୍ଧାରିଲ ମୋ ବେଳକୁ କର୍ଣ୍ଣେ ହାତ ଦେଲକ ।୪।
ଆରତ ଭଞ୍ଜନ ପ୍ରଭୁ ଗଞ୍ଜି ଦୁଃଖ ଦେଇକ,
ପୂର୍ଣ୍ଣିମାସୀ ଆଶା ତବ ପାଦ ପଦ୍ମ ପାଇଁକ ।୫।

—୦—

(ଗୀତ)

(ନଳଚନ୍ଦ୍ରେ ହୋ ଦେଖ ଉଡ଼ୁଛି ବାନା)
ପ୍ରିୟ ସଙ୍ଗଗୋ ଦେଖି ଚନ୍ଦ୍ରକୁ ହେଜ।
ଏ କେଉଁ ଦେବତା ପାଉଛି ପୂଜା (ଘୋଷା)

ହୋଇ ଲଣ୍ଡଭଣ୍ଡ ଗୁଡ଼ ଗୋପଦାଣ୍ଡ
ତପୋଧନେ ଆସି କରୁଛି ମଜା।
ଯେନ ଗୋପବାଳ କରୁଛି କ ଖେଳ
ତପେ ବୃନ୍ଦାବନ ହୋଇଛି ସଜ୍ଜା ।୧।

ଯେନ ଦୁଗ୍ଧ ଘର ଲବଣୀ ସାକର
ପହଞ୍ଚି ଗଲେଣି ଆସି ପରଜା।
ସ୍ୱର୍ଗେ ଦେବେ ଖୁସି ପହଞ୍ଚିଲେ ଆସି
ସଙ୍ଗେ ଆଣିଛନ୍ତି ଦୁନ୍ଦୁଭି ବାଜା ।୨।

କରି ବନଭୋଜ ପରଶି ଦେଉଛି
ଯେତେ ଯିଏ ଖାଉ ହେଉଛି ଖଞ୍ଜା।
ହୋଇ ଦେବସଙ୍ଘ ଦଶେ କେତେ ଶୋଭା
ଉଡ଼ୁଛି ପାତକ ନାଶନ ଧ୍ୱଜା ।୩।

ପାଦ ତଳେ ବସି ଭଜନକୁ ଘୋଷି
କରୁଥିବା ତାଙ୍କ ଚରଣ ପୂଜା
ନ ହୋଇ ଅଧିର ମାଗିନେବା ବର
କହେ ପୂର୍ଣ୍ଣଶ୍ରୀ କାହ୍ନୁ ନ କରୁ ତେଜ୍ୟା ।୪।

—※—

(ପାଞ୍ଚ)

ହେ ବନବହାରୀ
ଦୟାକର ଶୁଣ ଘନ ଜନ ଗୁହାରୀ (ଘୋଷା)

ହେଉଛୁ ତୋର ଯାତ
ଦେଖିବାକୁ ମୋ ଚତ୍ତ
ବନରେ ବନମାଳ
ଖେଳନ୍ତ ଲୁଚକାଳ
ବହୁଦୂର ପଥ ମୁହିଁ ଯିବ କପର ।୧।

ହେଉଛୁ ମୋର ମନ
କର କୃଷ୍ଣ ଦର୍ଶନ
କଞ୍ଜନୟନ ଦେଖି
ପବନ ହେବ ଆଖି
ଶାନ୍ତ ଚରଣୀରେ ମୋତେ କରଦେ ପାର ।୨।

ହୋଇଯାଉଛୁ ସଞ୍ଜ
ବେଳୁ ନାବକୁ ଖଞ୍ଜ
ଭଞ୍ଜନ ହେବ ଦୁଃଖ
ଗୃହିଁଲେ ପଦ୍ମମୁଖ
କୋଟି ଜନ୍ମ ପାତକ ମୋ ଯିବ ଉଦ୍ଧର ।୩।

ବଳଆ ଚଉବାହା
ହୋଇବ ମତେ ସାହା
ପୂର୍ଣ୍ଣମାସୀ ଶରଣ
ତୋ ପାଦେ ନାସ୍ତପୂଣ
ଫେରିବା କଥାଟି ଆଉ ନାହିଁ ମୋହର ।୪।

—*—

ଚକାଡୋଳା ତୁମେ
ଚକା ରସନରେ
ନୀଳାଚଳେ ମାରବରେ
ବସି ରହିଅଛ
ଜଗତନାଥ ହେ
ନୀଳଚକ୍ର ଧରି କରେ ।୧।
ଭକ୍ତଙ୍କର ତାତ
ପ୍ରଭୁ ଜଗନ୍ନାଥ
ମିଛେ କି ବୋଲନ୍ତି ଜଗତେ

ଭୃତ୍ୟ ଅପହଞି ଏତେ ବଡ଼ ପ୍ରଭୁ
କେମନ୍ତେ ଯିବ ପରତେ ।୨।

କାଠ ପାଷାଣର ଧାତୁ ପ୍ରତିମା ହେ
କାହୁଁ ଆସିବ କର୍ତ୍ତୃତ୍ୱ
ଜାଣିଥିଲି ମୁହିଁ ମୋର ପ୍ରଭୁ ବୋଲି
ନେଇଛ ମୋର ଦାୟିତ୍ୱ ।୩।

ମାୟାର ଠାକୁର କପଟ କରିଲ
ଘଙ୍ଗିଲ ଭୃତ୍ୟର ଟାଣ
ଭକତ ପଦର ଘଙ୍ଗିବା ପାଇଁକି
କରିଅଛୁ ପଣ ପଣ ।୪।

ଭୃତ୍ୟର ଟେକରେ ପ୍ରଭୁ ସିନା ତୁମେ
ଏ କଥା ନ ଜାଣ ହରି
ଜାଣିଥିଲି ମୁହିଁ ବଡ଼ ପ୍ରଭୁ ବୋଲି
କେତେ କଥା ଦେଉ କରି ।୫।

ଗଛରେ ଚଢ଼ାଇ ମୂଳକୁ କଟାଇ
କେଡ଼େ ନିଷ୍ଠୁର ହୋଇଲ
କୋମଳ ପରାଣେ କୁଠାରଘାତକୁ
କୁଣ୍ଠା ଟିକେ ନ ମଣିଲ ।୬।

କାଳଯାକ ଦୋଷୀ ତୁମଠାରେ ମୁହିଁ
ତେଣୁ ହରିଲ ମୋ ଶିଷ୍ଟ
ଆଉ କବା ଅଛୁ କ ଦଣ୍ଡ ବହିବ
ବଳୁର ଦଣ୍ଡକୁ ଧର ।୭।

ଅଜ୍ଞାନ ପଣରେ ଧିକାର କରୁଛୁ
କ୍ଷମା କରିବ ଗୋସାଇଁ

ମନ ଅଭିମାନ ସହି ନ ପାରିଲେ
ଅପ୍ରାଧ ଦେଖିବ ନାହିଁ ।୮।

ତୁମେ ମୋର ଇଷ୍ଟ ତୁମେ ମୋର ତୀର୍ଥ
ତୁମେ ସବୁ ବ୍ରତ ମୋର
ତୁମ ବିନା ପ୍ରଭୁ ସଂସାର ମଧ୍ୟରେ
ଆଉ କିଏ ଅଛି ମୋର ।୯।

ମୁଁ ଯେ ଅପରାଧି ତୁମେ କୃପାନିଧି
କ୍ଷମାସାଗର ବୋଲାଉ
ମାଗେ ପୂର୍ଣ୍ଣମାସୀ ଦୁଃଖିନୀ ଅଜ୍ଞାନୀ
ଏହି କୃପା ମୋତେ ଦେଉ ।୧୦।

ତୁମ ନାମ ସଦା ତୁଣ୍ଡ ମୋର ଗାଉ
ନାମ ପ୍ରେମେ ଦିନ ଯାଉ
କରୁଣା ବାରିରେ କୃପା ଜଳଧିରେ
ମୋ ପାପ ମୋଚନ ଦେଉ ।୧୧।



